# ବିଜଳୀ

ଲେଖିକା

ଶ୍ରୀମତୀ ପଦ୍ମାବତୀ ଦେଈ

ପ୍ରଥମ ସସ୍କରଣ

ପ୍ରକାଶକ

ଶ୍ରୀ ଉମାଚରଣ ମହାନ୍ତି

ପ୍ରୋପ୍ରାଇଟର କଟକ ପବ୍‌ଲିଶିଂହାଉସ୍

ନୟାସଡ଼କ, କଟକ.

ମୂଲ୍ୟ ଛଅଣା



# ଉତ୍ସର୍ଗପତ୍ର

ଭ୍ରାତଃ ।

ପଡ଼େ ମନେ, ବାଲ୍ୟେ ମୁହିଁ ବୁଲୁଥିଲି ଦିନେ
ସାୟାହ୍ନେ, ସଡ଼କ ଧୂଳି ବୋଳି ହୋଇଥାଏ
କ୍ଷୁଦ୍ରପାଦେ ମୋର, ଯେବେ ପକାଇଲି ମାଡ଼ି.
ଛିନ୍ନ ପୁସ୍ତକର ଛିନ୍ନ ପଦ୍ୟ ଲେଖା ଏକ,
ପଢ଼ିଲି ଗୋଟାଇ, ମାନେ ନ ପାରିଲି ବୁଝି;
କିନ୍ତୁ ବଡ଼ ଶ୍ରଦ୍ଧା ହେଲା ମୋର, ଧରି ତାହା
ଗଲି ତବ ପାଶେ, "ମୋତେ କହିଦିଅ ଭାଇ,
କିଏ ଲେଖିଅଛି, କିସ ଅଟେ ଏ ବାହାର ?"
କହିଲ ସସ୍ନେହେ ହସି "ଦୂର୍ ହ ପାଗଳା ।
ଜାଣି କି କରିବୁ ? ଯଦି ଏହିପରି ପଦ୍ୟ
ପାରନ୍ତୁ ତୁ ଲେଖି ତେବେ ପଚାରନ୍ତୁ ଆସି—
ପାରିବୁ କି ?" "ନ ପାରିବି" ମସ୍ତକ ହଲାଇ
କହିଲି ମୁଁ "ନ ଆସିବ ମତେ"; ରକ୍ତବର୍ଣ୍ଣ ଆଖି
ଉଠିଲା କପାଳେ ତବ "ନ ଆସିବ ମତେ"
"ନ ପାରିବି" ନ କହିବୁ ଦିନେ; ଯେ ଲେଖିଛି
ଏହାକୁ ସେ, ତୋହ ପରି ହାତ ଗୋଡ଼ ତାର,

ରକ୍ତମାଂସେ ତାଙ୍କୁ ବଧି ଗଢ଼ିଥିଲେ ଧନେ;
ତୋହପର ଧନେ ତେସ ତ ହୋଇଥିଲୁ ପିଲା;
ତୁ କିପାଇଁ ନ ପାରିବୁ ? ଚେଷ୍ଟା କର ମନ
ଦେଇ ଲେଖିଲେ ପାରିବୁ—ଦେଖାଇବୁ ମୋତେ ।"
ସେ କ୍ଷୁଦ୍ର ଭର୍ତ୍ସନା ଭ୍ରାତ ! ନିକଷେ ଯେସନ
ସ୍ୱର୍ଣ୍ଣରେଖା ସବୁ କ୍ଷୁଦ୍ର ହୃଦେ ଲେଖା ମୋର
ରହିଲା, ପଢ଼ିବ କି ମନେ ତବ ଏ କଥା ?
ସେ ଦିନୁ ସଚେଷ୍ଟ ହୁଏ; ମାତ୍ର କିବା ସାଧ
ଅଛି ମୋର ? ବାଲ୍ୟ ମନେ ରଚନାର ପଥ
କିଁ ଜାଣେ ବାଳିକାପ୍ରାଣ; କିନ୍ତୁ କ୍ରମେ କ୍ରମେ
ତବ ଅଙ୍କାରେଖା ଅସ୍ପଷ୍ଟରୁ ସୁସ୍ପଷ୍ଟତର
ହେଉଥିଲା କ୍ଷୁଦ୍ରତମ ହୃଦୟେ ମୋହର;
ତୁମ୍ଭର ଆଦେଶ ତଥା ତବ ଆଶୀର୍ବାଦେ
ତବ ଶିକ୍ଷାପୁଷ୍ପ ନେଇ ଗୁନ୍ଥିଛି ଯେ ମାଳ,
ଅରପିଲି ସେ ମାଳଟି ତବ ପାଦତଳେ ।

ସ୍ନେହର
**ଭଉଣୀ**

# ବିଜୁଳି



## ପ୍ରଥମ ସର୍ଗ

ହରିପୁର ନାମେ ଏକ ସୁନ୍ଦର ନଗର
ଥିଲା ଏ ଉତ୍କଳ ପୂର୍ବେ, ପଦତଳେ ଯାର
ବହୁଥିଲା ଖରସ୍ରୋତା ଚପଳୀ ତଟିନୀ,
ଉତ୍କଳ-ହିମାଦ୍ରି ମେଘାସନର ନନ୍ଦିନୀ ।
ନଗର ସୀମାନ୍ତେ ଘୋର ନିବିଡ଼ କାନନ
ଦେଇ ଭାଗ କରି ପ୍ରବାହିତ ଅନୁକ୍ଷଣ ।
ବଟବୃକ୍ଷ, ବଂଶକୁଞ୍ଜ ତାର ତୀରବନେ
ଅବିରତ ମୁଖରିତ ବିହଙ୍ଗକୂଜନେ ।
ସେ ତଟିନୀତଟେ ପର୍ଣ୍ଣବାସ ରଚିକରି
ନିବସନ୍ତି ନିରଜନେ ତପସ୍ୱୀଙ୍କ ପରି
ଦେନି ଚକ୍ଷୁହୀନ ଏକ ପ୍ରବୀଣ ପୁରୁଷ;
ନ ଜାଣନ୍ତି କେହି କାହିଁ ତାଙ୍କ ଆଦ୍ୟ ବାସ ।
ନୟନର ତାରି କିବା ସରଗର ତାରି—
ସମ କନ୍ୟାରତ୍ନ ମାତ୍ର ନୟନର କାରି ।
ସେ ସମ୍ବଳ ଏକମାତ୍ର ଜୀବନ ଜୀବର,
ହୃଦୟ ଅମୂଲ୍ୟନିଧି, ଲଉଡ଼ି ଅନ୍ଧର ।

ନାମ ତାହାର ବଜଳା, ସାକ୍ଷାତ ବଜୁଳ—
ଉପାଦାନେ ବିଧି କିବା ଗଢ଼ିଲେ ପିତୁଳ !
କୁସୁମରୁ ସୁକୁମାର ତନୁ ବାଳିକାର,
ଝାଉଁଳି ପଡ଼ଇ ସତେ ପରଶିଲେ କର ।
ଲାବଣ୍ୟଲହରେ ତାର କ୍ଷୁଦ୍ର ତନୁଲତା
ଝଁସୁଥିଲା, ମୂର୍ତ୍ତିମତୀ କିବା ସରଳତା ।
ମୃଦୁ ମଧୁର ନିଶାନ୍ତ ଜାଗ୍ରତୀ ସମୀର
ପରଶେ ଭାଙ୍ଗଇ ଯେବେ ନିଦ୍ରା କିଶୋରୀର,
ଉଠି ବେଗେ ଜାଗ୍ରତୀ ଶୀତଳ ସ୍ନିଗ୍ଧ ଜଳେ
ପ୍ରାତଃକୃତ୍ୟ ସାରି ପୁଣି ପିତାପାଶେ ମିଳେ ।
ଅନ୍ଧ ଜନକର ସାରି ପରିଚର୍ଯ୍ୟାମାନ,
ସଯତନେ କରେ ନିତ୍ୟକର୍ମ ସମାପନ ।
ତଟିନୀ ପୂରୁବ ତୀର ଅରଣ୍ୟାନୀ ଶିରେ
ଉଦୟି ତପନ ଯେବେ,ତପ୍ତ ହେମକାରେ
ଅବଗାହେ ବନରାଣୀ, ବନ ବୈତାଳିକ
ବିହଗ କାକଳିନାଦେ କାନନ ଚମକ
ହୁଏ ଯେବେ, ବୃଦ୍ଧ ପୁରଞ୍ଜୟ କନ୍ୟା ସନେ
ବାହାରନ୍ତି ଧୀରେ ଧୀରପଦ ବିକ୍ଷେପଣେ ।
ଯଷ୍ଟି ଖଣ୍ଡି ଧରି ଅଗ୍ରେ ବଜଳା ଗମଇ,
ପ୍ରାନ୍ତଭାଗ ଧରି ପିତା ପଛେ ପଛେ ଯାଇ ।
କାଳକବଳିତ ବୀଣାଟିଏ ବାମକରେ
ଧରି ନଗରାଭିମୁଖେ ଯାନ୍ତି ଏ ପ୍ରକାରେ ।
ପ୍ରତି ଦ୍ୱାରେ ଦ୍ୱାରେ ବୁଲି ବିପଞ୍ଚୀ-ଯୁତାନେ
ଗାଇ ଗୀତ, ଜନମାନ୍ତ ଭୁଲସୀ ଶୁଣାନେ ।

ଶୁଣି ଅମୃତସ୍ରାବଣୀ ବୀଣାର ଝଙ୍କାର,
ତତୋଽଧିକ ସୁଖଶ୍ରାବ୍ୟ ଗାନ ଗାୟକର,
ଶ୍ରବଣେ ବିମୁଗ୍ଧ ହୁଏ ଶ୍ରୋତାଙ୍କ ଅନ୍ତର,
ଦ୍ରବଇ ପାଷାଣ, ଝରେ ନୟନରୁ ନୀର ।
ଶୋକପିଡ଼ୁଲା ବାଳକା ମଳିନବସନା
ବସେ ମୌନମୁଖେ ସଦା ସଜଳନୟନା ।
ଦୟା ବହି ଭିକ୍ଷା ଆଣି ଦେଉଥାନ୍ତି ଜନେ,
ନିଅଇ ଆଦରେ ତାହା ବିସ୍ତାରି ବସନେ ।
ସାୟାହ୍ନ-ପଶ୍ଚିମାକାଶେ ଯେବେ ଦିନମଣି
ଚଳନ୍ତି, ଫେରନ୍ତି ବାସେ ପିତା ପୁତ୍ରୀ ବେନି ।
କାଖେ କୁମ୍ଭ ଘେନି ଧୀରେ ଯାଏ ନୀର ପାଇଁ
ଗୁଣୁ ଗୁଣୁ ସ୍ୱରେ ମନେ ମନେ ଗୀତ ଗାଇ ।
ଭିକ୍ଷାଲବ୍ଧ ଦ୍ରବ୍ୟ ବାଳା କରଇ ରନ୍ଧନ,
ନିଶାରେ କରନ୍ତି ତାହା ବେନିଏ ଭୋଜନ ।
ପ୍ରାଣପଣେ ପିତୃସେବା କରଇ ବାଳକା,
ଦୁହିତାବତ୍ସଳ ବୃଦ୍ଧଙ୍କର ଗଳାମାଳା ।
କେବେ ଜାହ୍ନବୀ ସୈକତ କୋମଳ ଶଯ୍ୟାରେ
ବସି ବାଳନେ ବାଳକା ବିଷାଦ ଅନ୍ତରେ
କରେ ବିଳାପେ ରୋଦନ କି ମନେ ଭାବିଣ,
ଝରଝର ଝରୁଥାଇ ନୟନରୁ ବାରି ।
କ୍ଷୁଦ୍ର କରପଲ୍ଲବେ ଆବରି ଗୁହୁ ମୁଖ
ବ୍ୟାକୁଳେ କାନ୍ଦେ ବାଳକା ହୋଇଣ ନିତରଖ ।
ପାଶରୁ ଅନ୍ତର ଜାଣି ଡାକନ୍ତେ ଜନକ,
ଶୋକ ସମ୍ବରି ସୁଶୀଳା ଆସେ ତାଙ୍କ ପାଖ ।

କେବେ ବା ତଟିନୀତଟ ଶିଳାପରେ ବସି
ବଜାଇ ବଂଶୀ ଗୀତ ଗାଏ ସୁଧାଭାଷୀ ।
ତଟିନୀ-ସମୀରେ ମିଶେ ସେ ତାନ ଲହରୀ,
ମନ୍ଦ-ପ୍ରକମ୍ପନେ ପୁଣି ଚୁମ୍ବେ ଥର ଥର ।
ଶ୍ରବଣେ ସ୍ତମ୍ଭିତ ବନ, ନଦୀ, ଚରାଚର,
ଉତ୍କର୍ଣ୍ଣେ ଶୁଣି ଝରାଏ ପତନି-ପତର ।
ଅର୍ଦ୍ଧଭୁକ୍ତ ତୃଣମୁଖେ କୁରଙ୍ଗ-ଅଙ୍ଗନା
ଶୁଣେ ସେ ସୁଧା-ସଙ୍ଗୀତ ଉଲ୍ଲୋଳନୟନା ।
ନୃତ୍ୟ ତେଜି କଳାପୀ ଶୁଣନ୍ତି ହର୍ଷମନେ,
ବାମାପାଶେ ମିଳନ୍ତି ମୋହନ ଆକର୍ଷଣେ ।
ରାଜହଂସୀ ମିଳେ ପାଶେ ତେଜି ସନ୍ତରଣ,
ଝରାଏ ବ୍ରତତୀ ବୃନ୍ତଚ୍ୟୁତ ପୁଷ୍ପମାନ ।
କୌମୁଦୀଚର୍ଚ୍ଚିତ ନୀଳ ଗଗନକୁ ଚାହିଁ
ବସିଥାଏ କେବେ ବାଳା ମୌନବତୀ ହୋଇ ।
ବିଜନେ ଜାଣିଥେ କେବେ ପିତାପାଶେ ବସି
ଗୀତାଧ୍ୟୟନେ ନିରତା ଥାଏ ପିକଭାଷୀ ।
କେବେ ବା ଆନ ପୁସ୍ତକ ସୁମନା ସୁମନେ
ପାଠ କରୁଥାଏ ଆହା ବସିଣ ନିର୍ଜନେ ।
ପାରାବତ, ମୃଗ, ମୃଗୀ, ମୟୂର, ମୟୂରୀ,
ରାଜହଂସ, ହଂସୀ ଆଦି ତାର ସହଚରୀ ।
ପୁତ୍ରକନ୍ୟାସମ ବାଳା ସମ୍ବୋଧେ ଆଦରେ,
ପରଗୃହୀ ତରୁ ଲତା ଦେଖଣ ବାହାରେ ।
କ୍ରମେ କଣ୍ଟଦନେ ତାର ଜୀବନ କାନନ
ପରଶିଲା ଯୌବନ-ମଳୟ-ସମୀରଣ ।

ବିକଶିଲ ସୁଷମା କୁସୁମ ଗୁଚ୍ଛ ଭଳି,
ନବୀନ ଲାବଣ୍ୟପ୍ରଭା ପଡ଼ିଲା ଉଚ୍ଛୁଳି ।
ଧନୁରେ ଯୋଚିବା ଯୋଗ୍ୟ ପୁଷ୍ପ ଜାଣି ମାର
ବିଶ୍ୱମୋହିନୀ ସୁଧା କି ଢାଳିଲା ତନୁର ?
ନିଜ ତନୁ ମନ ପରିବର୍ତ୍ତିନ ହେବାର
ଲକ୍ଷି ବିପନ୍ନ ହୋଇଲା ହୃଦ ଅବଲାର ।
ପିତୃସେବା କରେ ବାମା ଅନନ୍ୟମାନସେ,
ପୂର୍ବପରି ପିତା ସଙ୍ଗେ ଭିକ୍ଷା କରି ତୋଷେ ।
ଉଟିନୀତଟସ୍ଥ ସ୍ୱଚ୍ଛଶାଳ ଶିଳାପଟରେ
ବସି ଦିନେ ଶଶିମୁଖୀ ସାନ୍ଧ୍ୟଇଭିକରେ—
ସ୍ନାତ ପଶ୍ଚିମ ଆକାଶେ ଚାହିଁ ବିମ୍ବାଧରୀ,
ନୈରାଶ୍ୟନଦେ ଗାଧଉଛି ଭାବନାର ତରୀ ।
ମଧୁର ଶୈଶବକାଳ, ଜନନୀର କୋଳ,
ପ୍ରାଣାଧିକ ସହୋଦର ସଙ୍ଗତେ କଦଳ,
ଧୂଳିଧୂସରିତ ତନୁ କରେ ଝାଡ଼ିବାର,
ସସ୍ନେହ ଚୁମ୍ବନ ଆହା ବଚନ ମାତାର,
ଦିନ ଦିନକର କଥା ମନେ ପଡ଼ିଯାଏ,
ତରଙ୍ଗିଣୀବକ୍ଷେ କି ତରଣୀ ଭାସିଯାଏ ।
କିବା ଶାରଦ ଆକାଶେ ବଉଦର ମାଳା
ଖଣ୍ଡ ଖଣ୍ଡ ଯାଏ ଭାସି, ତେସନ ଅବଳା-
ହୃଦାକାଶେ ଅତୀତର ସ୍ମୃତି-ଘନରାଶି
ଗୋଟି ଗୋଟି ଗଲା ଭାସି; ଅବଶେଷେ ଆସି
ଭବିଷ୍ୟତ ଅସହାୟ ଦଶା ଚିନ୍ତା-ଘନ
ନୈରାଶ୍ୟ ହୃଦୟାକାଶ କରିଲା ଆଚ୍ଛନ୍ନ ।

ଭାଳେ ମନେ ମନେ ବାଳା ତେଜ ଦୀର୍ଘଶ୍ୱାସ,
"ପିତା ବିନା ଏ ଜଗତେ କେ ମୋହର ଆଶ ?
ଜଗଲୀ-କୋଳ-ବୁଦ୍ବୁଦସମ କାଳମୀରେ
ଝାଇଛୁ ମୋ ଆଶା ଭସି ନୈରାଶ୍ୟ-ସ୍ରୋତରେ ।
ଏହି ଜଗଲୀର କୂଳେ ସେ ସ୍ୱର୍ଗୀୟା ଲତା
ପ୍ରାଣର ଜନନୀ ମୋର ହେଲା ଭସ୍ମୀଭୂତା ।
ଏ ସୈକତ ଅନ୍ତରଣେ ଭୀମ ଶବାକୋଳେ
କରିଛୁ ଶୟନ ଭାଇ କାଳର କବଳେ ।
ମାଗୋ ତୋର ସ୍ନେହବୃନ୍ତେ ଦୁଇଟି କୋରକ
ଜନମି ଛିଣ୍ଡିଲା ଏକ, ରହିଲି ମୁଁ ଏକ ।
ପଡ଼ୁଅଛୁ ମନେ ମାଲୋ ! ଅନ୍ତିମେ ତୋହର,
କ୍ଷୀଣ ମଧୁରତାବୋଳା ବାଣୀ ସକାତର ।
ଗଦଗଦ ସ୍ୱରେ ଧରି ପିତାଙ୍କ ପୟର
କହିଲୁ, 'ମୋ ଲାଗି ନ ଭାବିବ ପ୍ରାଣେଶ୍ୱର;
ପାଳିବ ଯତନେ ଏହି ନାଥ ଦୁଃଖିନୀର,
ମୋତେ ନ ଝୁରିବ ଯେବେ ବାଳଳା ମୋହର ।"
ଏତେ କହି ମୁଦିଲୁ ମା ସଜଳ ନୟନ,
ଚିରନିଦ୍ରାରେ ଗୋ ସତ ବଳିଲୁ କେମନ !
ଆହା ବାଧି, ଏହା ପୁଣି ଥିଲା ମନେ ତୋର,
କପାଇଁ ହରିଲୁ ନେବ ପିତାଙ୍କର ମୋର ?
ମୋ ପ୍ରାଣ ନ ଯାଇ ଦେହେ ରହିଲା କପାଇଁ ?
ଜୀବନ ଦୁର୍ଗମପଥେ ନିଃସହାୟ ମୁହିଁ ।
ଏକେ ତ ସ୍ଥବିର ପିତା, ଶୋକ ଝଞ୍ଜାବାତେ
ଉପୁଡ଼ି ରହିଅଛନ୍ତି, ଯେବେ ଅକସ୍ମାତେ.

ପଡ଼ିବେ ଭୂତଳେ, ଅହା ! କାହାର ଆଶ୍ରୟ
ଲଭିବ ଏ ଅଭାଗିନୀ ? ହା ହତହୃଦୟ !”
ବାଷ୍ପରୋଧ କରି ନ ପାରିଲ, ଉଚ୍ଚସ୍ୱରେ
କାନ୍ଦନ୍ତେ ଭାବନାଶଙ୍କା ଶୋକ-ପାରାବାରେ
ବୁଡ଼ିଲା, ବୁଡ଼ଇ ଯଥା କର୍ଣ୍ଣଧାର ବିନା
ଭଗ୍ନ ତରଙ୍ଗିଣୀ, ତଥା ବ୍ୟାକୁଳା ନବୀନା ।
ବାମକରତଳେ ଗଣ୍ଡ, ଗଳଦଶ୍ରୁଧାର
କମଳ କି ପଡ଼େ ଝରି ନିଶାନ୍ତ ତୁଷାର ।
ଶୋକାରୁଣ ବନଜ-ବଦନାର ବଦନ,
ଦେଖିଲ ଅସି ସେକାଳେ କୁରଙ୍ଗୀନନ୍ଦନ ।
ମଳିନ ବସନାଞ୍ଚଳ ବାଳାର ମୁଖରେ
ଧରି ଆକର୍ଷିଲ, ଅହା ! ଖରଶୋକଝଡ଼ରେ
ପଡ଼ିଲା ବନ୍ଧ ସହସା, ଚମକି ବାଳା
ଚାହିଁଲା, ସ୍ନେହପାଳିତ କୃଷ୍ଣମୃଗବଳା
ଅଞ୍ଚଳ ଟାଣି କହଇ ସ୍ନେହବୋଳା ବାଣୀ;
ଆଦରେ ଧରିଲା ଅଶ୍ରୁ ମୁଞ୍ଚି ଏଣୀଯଣୀ ।
ମୁଖେ ମୁଖ ଦେଇ ସ୍ନେହେ ଦିଅନ୍ତେ ଚୁମ୍ବନ,
ଘୋଟକ ଝଂପଟନାଦ ପଶିଲ ଶ୍ରବଣ ।
ସହସା ସିଦ୍ଧାଣୀ ଫେରି ଦେଖିଲ ଅଦୂରେ,
ବୁଡ଼ିଲ ଭୟ-ବିସ୍ମୟ-ଲଜ୍ଜା-ଜଳଧିରେ ।
ଦ୍ୱିତୀୟ ଅନଙ୍ଗମୂର୍ତ୍ତି ତୁରଙ୍ଗପୃଷ୍ଠରେ,
ଉପବିଷ୍ଟ ଯୁବାମଣି ମୃଗୟା ବେଶରେ ।
ସୁସଜ୍ଜିତ ବରବପୁ, କରେ ଧନୁ ତୀର,
କଟିତଟେ ବିଲମ୍ବିତ ବନ୍ଧ ତରବାରି,

ଝଳ ଗୌରବପୁ ତପ୍ତ ହେମପ୍ରଭା ଗଞ୍ଜେ,
ନେନେ ନାସାଧୃତରେଖା ଜ୍ୟୋତି କି ବିରାଜେ !
ଚୀରପରିଚ୍ଛଦେ କଳେବର ଆଚ୍ଛାଦିତ,
ଗ୍ରୀବାରେ ଲମ୍ବେ ବାବୁରି କୁନ୍ତଳ କୁଞ୍ଚିତ ।
ସୌନ୍ଦର୍ଯ୍ୟ-ସରେ ଶ୍ରୀମୁଖ-ବିକଚ-ପଙ୍କଜ
ବାସେ ଚୁମ୍ବେ କି ସେ କେଶ ଅଳି-ଶିଶୁବ୍ରଜ ।
ଦେଖି ଯୁବତୀ ମୋହନମୂରତି ଯୁବାର,
ସଂହରି ନେଲା ଚାହାଣି ବେଗେ ଗ୍ରୀମାବର ।
"କେ ଏ ବୀରବର" ବାମା ଭାବେ ମନେ ମନେ,
ଅତନୁ କି ତନୁ ଧରି ବିଜେ ଏ ବିପିନେ ?
ପିଇଛୁ ନୟନ କେତେ ଶୋଭା-ମଧୁପଣା,
ମାନ ଏ ସୌନ୍ଦର୍ଯ୍ୟସୁଧା ଧୈର୍ଯ୍ୟ କଲା ବଣା ।
ବାରେକ ନିରେଖି ପିଣ୍ଡେ ପ୍ରାଣ ଥିବାଯାଏ
ଏ ଅତୁଳ ଚନ୍ଦ୍ରାନନ ପାଶୋରିବ କିଏ ?
ସ୍ବର ନରତରୁଣୀ, ମେନକା, ଉର୍ବଶୀ
ଏ ମୁଖ ଦର୍ଶନେ ନିଶ୍ଚେ ପଦେ ହେବେ ଦାସୀ ।
ଶୋଭାରାଶି ଅହା, ପଦ-ସରୋଜ ତଳକୁ
ନୋହିବେଟି ଯୋଗ୍ୟ, ମୋର ଆସଇ ମନକୁ ।
କିପାଁ ଅକସ୍ମାତେ ମନ ହୋଇଲା ଚଞ୍ଚଳ,
ଅପୂର୍ବ ଉନ୍ମାଦେ ହୃଦ ହୁଏ ଉଦ୍ବଳ,
କିପାଇଁ ବୃଥା ଦୁରାଶା ପ୍ରାଣିକୁ ସବଳେ
ବିକାଇଲା ଏ ଅତୁଳ ଶ୍ରୀଚରଣତଳେ ?
କାଙ୍ଗାଳିନୀ ପାଏ କାହିଁ ହୀରକର ଖଣି ।
ଚକୋରୀ ଅଧରେ ସୁଧା କିଏ ଦେବ ଆଣି ।

ରେ ମନ, ଭ୍ରମୁଛୁ କପାଁ ଦୁରାଶା-କାନନେ,
ଲୋଡ଼ୁଛୁ ଶରତ-ସନ୍ତାପ-ପୁଷ୍ପ ଅଘ୍ରାଣେ ?"
ଏମନ୍ତ ଭାଳନ୍ତେ ଶରଦିନ୍ଦୁନିଭାନନା,-
ଭାବନାବର୍ମିତ ଗଣ୍ଡ-ଅଦରଶେ ପୁଣି ।
ଏଥିମଧ୍ୟେ ତୁରଙ୍ଗ ଉତ୍ତରି ବୀରବର,
ତରୁଡାଳେ ବାନ୍ଧି ଉଭା ସମ୍ମୁଖେ ବାଳାର ।
କାନନକମଳା ସମ ଦେଖି ବିଜଳାରେ
ଆକର୍ଷିତ ମନ-ମୀନ ରୂପ ବଡ଼ଶୀରେ ।
ଖେଳାଖଞ୍ଜନନୟନା ଚାହାଣି-ବାଗୁରି,
ମୃଗସମ ମୃଗୟୁ ମଣ୍ଡଳ ତହିଁ ଧରି ।
ଚୁମ୍ବକ ଆକୃଷ୍ଟ ଲୌହପ୍ରାୟେ ବୀର ମନ
ସୁଷମାମୁକୁଟେଶ୍ୱରୀ ଲପନେ ଲଗନ ।
ଭାଳେ ମନେ ଯୁବା, "ଏ କି କାନ୍ତିକୁଳେଶ୍ୱରୀ,
କେଉଁକାଳେ ବିଧି ଗଢ଼ିଅଛି ଏ ସୁନ୍ଦରୀ ?
ପ୍ରଲମ୍ବକୁନ୍ତଳଭାର ଧୂଳିଧୂସରିତ,
କାଦମ୍ବିନୀ କୋଳେ ସୌଦାମିନୀ କି ସ୍ଥଗିତ ?
ଯୌବନ ମାଠେ ମାଠିଛି ଶିଳ୍ପୀ ଫୁଲଧନୁ,
ଲାବଣ୍ୟନୀରେ କି ସ୍ନାତ କରିଅଛି ତନୁ ?
ଅକର୍ଣ୍ଣବିସ୍ତୃତ ଅହା ନୟନକମଳ,
ଖେଳେ ତରଙ୍ଗ ଚାହାଣି ତରଳ ସଲିଳ !
ଭ୍ରୂଲତା କିବା କାମ-କର ଶରାସନ ?
ଚାହିଁବ ଯେ ବାରେ, ଶର କରିବ ମୋଚନ ।
ସୁମୁଖୀ ଚାରୁ ନାସିକା କିବା ମନୋହର,
ଅମଳ ଗଣ୍ଡଫଳକ କନକ-ମୁକୁର ।

ଥୋପି ପଡ଼ୁଛି କି ରଙ୍ଗ ଲଳିତ ଅଧରେ,
ପ୍ରବାଳ ମାଳ କି ଭାସେ ସୌନ୍ଦର୍ଯ୍ୟ-ସାଗରେ !
ଉଡ଼ି ଚୂର୍ଣ୍ଣ କୁନ୍ତଳ ସମୀର ପରଶରେ
ସୁରଭିଶ୍ୱାସିନୀ ଗଣ୍ଡ ଚୁମ୍ବେ ଥରେ ଥରେ ।
ମୃଣାଳ-ବାହୁବଲ୍ଲରୀ ସୁଗୋଲ ସୁନ୍ଦର,
କେଉଁ ଭାଗ୍ୟଧର-ଗଳା-ଗୃହୁ-ମୋହାହାର ?
ହେମ-ପଦ୍ମକଳି କିବା ଉର ବନ୍ଧୁରତ,
ସୁଧାପୂର୍ଣ୍ଣ ଘଟ ଶୋଭାସିନ୍ଧୁରୁ ଉତ୍ଥିତ ?
କ୍ଷୀଣୋଦରୀ କ୍ଷୀଣକଟି ଅର୍ଦ୍ଧ ବିମଳିନ
ବାସେ ଅଚ୍ଛାଦିତ, ଅହା ! ତଥାପି ଶୋଭନ ।
ଗୃହୁଚରଣା ପାଦତଳ ସ୍ଥଳ-କମଳ
ଶୋଭାକୁ ଧିକ୍କାରେ, କାହୁଁ ହୋଇବ ବା ତୁଲ !
ଅଭରଣହୀନା ଆହା ! ଅତୁଳ ସୁନ୍ଦରୀ,
ସଧବା କିବା ବିଧବା ନ ହୁଅଇ ବାରି ।
ସୁନ୍ଦର ସୀମନ୍ତେ ନାହିଁ ସିନ୍ଦୂରର ରେଖା,
ସୁଗୃହୁ କରଯୁଗଳେ ନାହିଁ ଚୂଡ଼ି ଦେଖା ।
ରକ୍ଷକବିହୀନା ଶୋଭା ଉଦ୍ୟାନେ ବନିତା,
ଫୁଲ୍ଲକୁସୁମିତା ଅହା ଏ କନକଲତା ।
ନିରକ୍ଷକ ହେଲେହେଁ ରକ୍ଷକ ଅଛି ମାର,
ଯେ ଛୁଇଁବ ଥରେ ମର୍ମେ ବାନ୍ଧିବ ତା ଶର ।
ଯା ହେତାର ହେଉ ନେବି ଯାଇ ପରିଚୟ,
କରୁ ନ କରୁ ସ୍ୱୀକାର, ପଛେ ଯା ଉପାୟ ।
ସୁନ୍ଦରୀମୁଖରୁ ପଦେ କଥା ଶୁଣିପିବି,
ଶ୍ରବଣଯୁଗଳ ମୋର ସାର୍ଥକ କରିବି ।"

ଏମନ୍ତ ଭାଳି ତରୁଣ-ମଣ୍ଡଳମଣ୍ଡନ,
ତରୁଣୀ ସମ୍ମୁଖେ ଆସି ଦେଲେ ଦରଶନ ।
ସସମ୍ଭ୍ରମେ ଉଠି ଭଦ୍ର ହେଲା ସେ ଛଇଳା,
କପୋଳଦେଶେ ସଭୟ ବ୍ରୀଡ଼ା କଲା ଖେଳା ।
ଲଜ୍ଜା, ଭୟ, ନବପ୍ରେମ, ଅନୁରାଗଭରେ,
ସୁଠାମ୍ ତନୁଲତିକା ମୃଦୁମନ୍ଦ ଥରେ ।
ସମୀରେ କମ୍ପିତା ଯଥା ମାଧବୀ-ବଲ୍ଲରୀ
ପୁଷ୍ପ ପତ୍ରସହ, ତଥା କମ୍ପେ ବିମ୍ବାଧରୀ !
ବିଜୁଳି ଚମକେ ଥରେ ଚାହିଁଲା ବିଜାଳା
ବୀର ଚାରୁମୁଖେ, ପୁଣି ନତ କଲା ଡୋଳା ।
ଆକାର ବିକାରୁ ବାଳା ଅନୁରାଗ ଲକ୍ଷି
ମନେ ମନେ ଯୁବାମଣି ହେଲେ ଅତି ସୁଖୀ ।
କହିଲେ ଧୀରେ, "ସୁନ୍ଦରି ! ଭୟ କର୍ପା କର,
ଶ୍ରୀମୁଖ ଦର୍ଶନମୂଲ୍ୟେ କିଣା ମୁଁ ତୁମ୍ଭର ।
ନୋହେ ପର, ସଖି ! ରାଜା ମୟୂରଶେଖର
ଏଦେଶ ନରେଶ, ମୁହିଁ ତାହାଙ୍କ କୁମର
ବୀରେନ୍ଦ୍ରକୁମାର ମୋର ନାମରେ ଲଳନା,
ବୃଥା ଲଜ୍ଜାଭୟେ କମ୍ପା ହୁଅ ଛନ୍ନମନା ?
ରେ ମୃଗନୟନେ ! ମୃଗୟା ସକାଶେ ମୁହିଁ
ଯାଇଥିଲି ଦୂରବନେ, ଏଥେ ଅସିଲଇଁ ।
ଶିକାରୀ ହୋଇ ମଦନ-ଶିକାରର କରେ
ପଡ଼ିଗଲି ଧର ଚାହିଁ ଏ ଚାରୁ ମୁଖରେ ।
କେଉଁ ଭାଗ୍ୟବତୀ ଗର୍ଭସାଗରସମ୍ଭୂତା
ଅଟ, ବନ୍ଧୁଳିଅଧରା ! କାମକଳ୍ପଲତା ।

କେ ଅବା ଜନକ ତବ ? କେଉଁ କୁଳେ ଜାତ ?
କାନନେ କାହୁଁ ଆସିଲ ମର୍ତ୍ତ୍ୟପାରିଜାତ ?
କହି ସନ୍ଦେହଭଞ୍ଜନ କର ଜବାଧରି,
ସଂଶୟଦୋଳାରେ ମନ ହୁଅଇ ଅଧିର ।"
ଯୁବକର ପରିଚୟେ ଜାଣିଲା ସିହାଣୀ,
ହରିପୁର ଯୁବରାଜ ବୀରେନ୍ଦ୍ର ଅଗ୍ରଣୀ ।
ନପାରେ ପୋତି ତଳକୁ ଗୃହୁଁ ଚନ୍ଦ୍ରାନନ
ମଧୁ ବୀଣାସ୍ୱରେ ଧୀରେ କହିଲା ଏସନ ।
"ହେ କୁମାର ! ପରିଚୟ କିବା ଦେବି ମୋର !
ପଥଭିକାରୁଣୀ ମୁହିଁ, ଏହି ମୋ କୁଟୀର ।
ମୋ ଦୁଃଖ ଶୁଣିଲେ ଶିଳା ଦ୍ରବି ଯାଏ ବହି,
କୋମଳହୃଦୟ ତବ, ପାରିବ କି ସହି !
ସୁଦୂର ମାଳବଦେଶେ ଥିଲେ ନରବର
ପୁରଞ୍ଜୟନାମେ, ଅତି ଧାର୍ମିକପ୍ରବର ।
ନ୍ୟୂତର ବାକ୍ୟ ଦେବ ! କେ କରିବ ଆନ,
ଅକସ୍ମାତେ ରାଜ୍ୟରେ ପଶିଲେ ଶତ୍ରୁଗଣ ।
ବିଶ୍ୱାସଘାତକ ମନ୍ତ୍ରୀ ମନ୍ତ୍ରଣାର ଫଳେ
ରାଜ୍ୟ ଧନ ହରିଲେ ଅଶେଷ କଉଶଳେ ।
ସମରେ ଏକ ତୀର ଆଘାତେ ରାଜାଙ୍କର
ଚକ୍ଷୁ ଏକ ନଷ୍ଟ ହେଲା, ଶେଷେ ଘୋରତର
ସମରେ ପରାସ୍ତ ହେଲେ, ବିଷାଦେ ରାଜନ
ରାଣୀ ଶିଶୁପୁତ୍ର ବେନି ସଙ୍ଗତେ ଘେନିଣ
ଗୁପ୍ତପଥେ ରଜନୀରେ ରାଜ୍ୟ ଛାଡ଼ି ଗଲେ,
ଶତ୍ରୁ ସୈନ୍ୟ ଅଲକ୍ଷ୍ୟରେ କାନନେ ପଶିଲେ ।

ପାଞ୍ଚ ମାସ ଗର୍ଭଭାର ଅବା ରାଣୀଙ୍କର,
ନାନାକଷ୍ଟେ ସଙ୍ଗେ ଘେନି ବୁଲନ୍ତି ବନର ।
ଶତ୍ରୁ ଚରଭୟେ ଜନପଦେ ନ ରହନ୍ତି,
ବନେ, ପର୍ବତକନ୍ଦରେ କନ୍ଦରେ ଭ୍ରମନ୍ତି ।
ବନକଣ୍ଟା ଲାଗି କ୍ଷତବିକ୍ଷତ ଶରୀର
ହୁଏ, ରାଣୀ ଶିଶୁ ଘେନି ବ୍ୟଥିତ ଅନ୍ତର ।
ବନଫଳ ଭୋଜନେ ଉଦର ଜ୍ୱର ଶାନ୍ତି,
ଲକ୍ଷ୍ୟହୀନେ ପଥ ଅତିକ୍ରମ କରୁଥାନ୍ତି ।
ଗର୍ଭାଳସୀ ରାଣୀଙ୍କର ପଥ ଚାଲିବାର
ନ ରହିଲା ଶକ୍ତି, କ୍ରମେ ଚିନ୍ତିତ ଅନ୍ତର ।
କେତେଦିନେ ଆସି ଏଠେଁ ଛଦ୍ମବେଶ ହେଲେ,
ନିର୍ମାଣ କରି କୁଟୀର ଏଠାରେ ରହିଲେ ।
ସାମାନ୍ୟ ସମ୍ବଳେ ଆସିଥିଲେ ନରରାୟ,
ପଥରେ ହେଲା ନିଃଶେଷ, ହେଲେ ନିରୁପାୟ ।
ଉଦର ପୋଷଣଅର୍ଥେ ଆତ୍ମଗୋପନରେ
ଭାଟବେଶେ ଭିକ୍ଷା ପାଇଁ ଯାଆନ୍ତି ନଗରେ ।
ସଙ୍ଗୀତଶାସ୍ତ୍ରରେ ଥିଲେ ଅତି ସୁନିପୁଣ,
ନରପତି ଛଦ୍ମବେଶେ କରନ୍ତି ଗାୟନ ।
ବୀଣା ସହଯୋଗେ ଗାଇ ପ୍ରତି ଦ୍ୱାରେ ଦ୍ୱାରେ
କରନ୍ତି ଭିକ୍ଷା, ଉପାୟ ନ ଦେଖି ଏଠାରେ ।
ପ୍ରସବବେଦନା ଯେବେ ହେଲା ରାଣୀଙ୍କର,
ନିଃସହାୟା, ପାଶେ କେହି ନ ଥିଲେ ତାଙ୍କର ।
ଏହିଠାରେ ଏ କୁଟୀରେ ଏ ଅଭାଗିନୀର
ହୋଇଲା ଜନମ ସେହି ରାଣୀଙ୍କ ଗର୍ଭର ।

ପ୍ରସବନ୍ତେ ମାତା ମୋର ହେଲେ ମୂର୍ଚ୍ଛିତା,
ଧୂଳି ପଙ୍କିଳେ ପଡିତା ଯେହ୍ନେ ଅରକ୍ଷିତା ।
ମାତା ଦଶା ଦେଖି ଭ୍ରାତା ବକୁଳଭୂଷଣ,
ପାଞ୍ଚବର୍ଷ ମାତ୍ର ଶିଶୁ, କରଇ ରୋଦନ ।
କେତେକ୍ଷଣେ ପିତା ହେଲେ ନଗରୁ ଆଗତ,
ଦେଖିଲେ ଜନନୀ ହୋଇଛନ୍ତି ମୂର୍ଚ୍ଛିତ ।
ଶତ ଶତ ଦାସୀ ଖଟିଥିଲେ ଯା ପୟର,
ଦୀନା ପରି ଦଶା ଆଜ ସେହି ରାଣୀଙ୍କର ।
ସୁକୁମାର ପାରିଜାତ ଲୁଣ୍ଠିତ କର୍ଦ୍ଦମେ,
ହେରି ଅତିଶୟ ଦୁଃଖୀ ହେଲେ ନିଜ ମନେ ।
ପିତାଙ୍କ ଶୁଶ୍ରୂଷା ଯତ୍ନେ ହେଲା ମାତାଙ୍କର
ଚେତନା, ଏ ଦୁଃଖିନୀର କରିଲେ ସତ୍କାର ।
ଏମନ୍ତେ ଦୁଃଖ ସୁଖରେ ଲାଳନ କରନ୍ତି,
ବଜଳା ବୋଲି ଏ ଦୁଃଖିନୀକି ଡାକୁଥାନ୍ତି ।
ଭାଇଙ୍କ ସଙ୍ଗରେ ସୁଖେ ଏହି ନଦୀତୀରେ
ଖେଳି ବୁଲୁଥାଏ, ଆହା ଏ ଜୀର୍ଣ୍ଣ କୁଟୀରେ
ଜନନୀ ମୋହର ନିତ ବଦ୍ୟା ଅଧ୍ୟୟନ
କରାନ୍ତି ଆମ୍ଭଙ୍କୁ, ପୁଣି ଜନକ ଆପଣ
ଅସ୍ତ୍ରଶିକ୍ଷା ଦେଉଥାନ୍ତି, ସସ୍ନେହ ଆଦରେ
ପାଳୁଥାନ୍ତି ମାତା ପିତା ଅତି ଆନନ୍ଦରେ ।
ଦରିଦ୍ର ଦମ୍ପତି ଆହା ଆମ୍ଭ ମୁଖ ଦେଖି
ପାସୋରନ୍ତି ଦୁଃଖ, ମନେ ହେଉଥାନ୍ତି ସୁଖୀ ।
କାନନର କପୋତ କପୋତୀ ସମ ସୁଖେ,
ଆମ୍ଭଙ୍କୁ ସେ ପାଳୁଥାନ୍ତି ଘେନି ବୁକେ ବୁକେ ।

ଅମରାବତୀକୁ ବଳେ ଏ କ୍ଷୁଦ୍ର କୁଟୀର,
ଅମୃତରୁ ସ୍ୱାଦ ଭକ୍ଷ୍ୟାଲବ୍ଧ ଯେ ଆହାର ।
ଜନନୀର ସ୍ନେହକୋଳେ ଭାଇ ଭଗ୍ନୀ ବେନି
ବଢ଼ିଲୁଁ, ଅନ୍ୟ ଭାବନା ନ ପାରିଲୁ ଜାଣି ।
ଶାରଦୀୟ ସପ୍ତମୀ ମଧୁର ପ୍ରଭାତରେ
ମାତାଙ୍କୁ ନ କହି ବେନି ଗଲୁଁ ବନଘୋରେ ।
'ତୋଳି ଫୁଲ ପୂଜିବା କାନନଦୁର୍ଗାପାଦ,'
ଖେଳ କଉତୁକେ ଭାଇ ବଳାଇଲେ ସାଧ ।
ଉଠୁଥାଲେ ଗଛି ଡାଳ ଦୋହଲାନ୍ତି ଭାଇ,
ତଳେ ମୁଁ ଅଞ୍ଚଳେ ଭରେ କୁସୁମ ଗୋଟାଇ ।
କ୍ଷୁଦ୍ରତମ ସର୍ପ କାହୁଁ ଅକସ୍ମାତେ ଆସି,
ଭାଇଙ୍କ କ୍ଷୁଦ୍ର ପଦ୍ମରେ ଦେଲା ଆହା ଦଂଶି ।
ଓହ୍ଲାଇ ଭୂତଳେ ବିଷ ଦାରୁଣ ଜ୍ୱାଳାରେ
ହେଲେ ଅତି ଅସ୍ଥିର ସେ ବିଜନ କାନ୍ତାରେ ।
ସପ୍ତ ବର୍ଷ ଶିଶୁ ମୁହିଁ କି ବା ସାଧ୍ୟ ମୋର,
କି କରିବି ଭାବି ହେଲି ଅତ୍ୟନ୍ତ କାତର ।
କାନ୍ଦିଲି ଉଇରେ ଭାଇଙ୍କର ମୁଖ ଚାହିଁ,
ବ୍ୟାକୁଳେ ଅଥୟେ ମୋତେ ପ୍ରବୋଧନ୍ତି ଭାଇ ।
'ନ କାନ୍ଦ ବିଜଳୀ ପ୍ରାଣ ଭଗିନୀ ଲୋ ମୋର,
ସରିଗଲା ଲୀଳା ଖେଳା ଆଜଠୁଁ ମୋହର ।
ମାଆ ବାପାଙ୍କର ମୁଖ ଦେଖିବାର ପାଇଁ
ରହିବ ନାହିଁ ଏ ପ୍ରାଣ ଜାଣୁଛି ଲୋ ମୁହିଁ ।
ମୋପାଇଁ କାନ୍ଦିବୁ ନାହିଁ, ମୋ ରାଣଟି ତୋତେ,
କହିବୁ ମାତାଙ୍କୁ ଆଉ ନ ଦେଖିଲି ନେତେ ।

ଶ୍ରୀମୁଖୁ ଶୁଣିଲ ନାହିଁ ସ୍ନେହବୋଳା ବାଣୀ,
ମୋତେ ଭ୍ରାତ ମନେ ନ କରବେଟି ଭ୍ରଲେଣି ୮
ଏ ବଚନ ଶୁଣି ମୁହିଁ ଅଧିକେ ରୋଦନ
କରନ୍ତେ ପ୍ରତିଧ୍ୱନିତ ହୁଅଇ କାନନ ।
ଏଣେ ପିତା ଅନୁସର ଅନ୍ତରେ ଶଙ୍କିତ,
ବନେ ବନେ ଖୋଜି ବୁଲି ହେଲେଣି ବ୍ୟଥିତ ।
ମୋ ରୋଦନରବ ଶୁଣି ପିତା ସେ ସ୍ଥାନରେ
ପ୍ରବେଶି ଦେଖିଲେ ଭାଇ ବଷର ଜ୍ୱାଳାରେ
ହେଉଛନ୍ତି ଛଟପଟ, ବାଣବଦ୍ଧ ମୀନ
ପରାୟେ, ଦେଖି ଦୁଃଖରେ ହଜଗଲ ଜ୍ଞାନ ।
କହିଲେ ମୁମୂର୍ଷୁ ଭ୍ରାତ କ୍ଷୀଣ ମୃଦୁସ୍ୱରେ ,
'ପିତଃ ! ନିଅ ବହି ମୋତେ ମାତାଙ୍କ ପାଶରେ,
ଦେଖିବ ତାହାଙ୍କ ମୁଖ, ଶରଦନ ପାଇଁ
ନେବ ମୁଁ ବଦାୟ୍ଯ ଅଉ ବେଳ ମୋର ନାହିଁ ।',
ଏହା ଶୁଣି ପିତା ତାଙ୍କୁ ତୋଳିଲେ ବକ୍ଷରେ,
ଅଳ୍ପକ୍ଷଣ ମଧ୍ୟେ ବହି ଆଣିଲେ କୁଟୀରେ ।
ମାତାଙ୍କ କୋମଳ କୋଳେ ଦଅନ୍ତେ ଶୁଆଇ,
କହିଲେ ସେ ସଜଳଜଳଜ ମୁଖ ଚୁହିଁ ।
'କେତେ କଷ୍ଟେ ପାଳିଥିଲ ମୋତେ ଗୋ ଜନନ !
ଯାଉଛୁ ଗୋ, ଶ୍ରୀଚରଣୁ ନେଉଛୁ ମେଲାଣି ।
ନ ଶକ୍ତିବ ଆଉ ମୋତେ, ବଜଳା ମୋହର
ମୋ ବନ୍ଧନେ ହେବ ମାଗୋ ! ଅତ ନାରଖାର ।
ଅବୋଧ ବାଳିକା, ତାକୁ ଯତନେ ବୋଧିବ,
ହତଭାଗାକୁ ଗୋ ଆଉ ମନେ ନ କରିବ ।'

ସ୍ୱର ରୁଦ୍ଧ ହେଲା, ବାଳା ଶୋକରେ ବିହ୍ୱଳା;
• ଦର ଅଶ୍ରୁ ଝର ଝରୁ ନୟନେ ବହିଲା ।
ମୁହୂର୍ତ୍ତେ ସମ୍ବରି ଶୋକ କହେ ପୁଣି ଧୀରେ,
"ହେ କୁମାର ! ଏତେ କହି ଅହା କ୍ଷୀଣସ୍ୱରେ
ଶରତରେ ମୁଦିଲେ ସୁନ୍ଦର ନେତ୍ର ବେନି,
ତକ୍ଷଣେ ଭୂତଳେ ଲୋଟି କାନ୍ଦିଲେ ଜନନୀ ।
ମୃତ ପୁତ୍ରମୁଖେ ଦୁଃଖେ ଦେଇଣ ଚୁମ୍ବନ
ଶୋକବିହ୍ୱଳିତା ମାତା ବୋଇଲେ ଏସନ,
'ଅହା ରେ ଦରିଦ୍ରଧନ ! ଦୁଃଖିନୀର ନିଧି !
କେମନ୍ତେ ହରିଲୁ କୋଳୁ ଅରେ କ୍ରୂର ବିଧି !
କାହିଁ ଗଲୁ ବାପ ମୋର ରଙ୍କିଣୀ-ରତନ,
ଫାଟିଯାଏ ହୃଦ, ପଦେ କହ ରେ ବଚନ ।
ରେ ବାବୁ ! ତେ.ହର ଧର୍ମ୍ମ ସୁଧାଂଶୁ-ବଦନ
ଚାହିଁ ଶନ୍ତାପିତ ଦୁଃଖେ ହରୁଥିଲି ଦିନ ।
ରାଜ୍ୟ, ଧନ, ଗୃହ ଛାଡ଼ି ଶେଷେ ଭିକ୍ଷା କରି
ନ ଜାଣେ ରେ ଦୁଃଖ ତୋର ଚାରୁମୁଖ ହେରି ।
ଯାଇଥାଉ ଖେଳି ବୁଲି, ତୋ ଆସିବାଯାଏ
ତୃଷିତ ନୟନେ ତୋର ବାଟ ଚାହିଁଥାଏ ।
ମାଆ ବୋଲି ଯେତେବେଳେ ଡାକୁ ବାପଧନ,
ହୃଦୟ-ଆକାଶୁ ଦୂର ହୁଏ ଶନ୍ତାପନ ।
ଉଠ ବାବୁ ! ପିତା ତୋର ଦେଖିଣ ଏ ଦଶା
ଶୋକେ ଆକୁଳ ହୃଦୟ ଦୁଃଖରେ ବିବଶା ।
ପିତୃ ଆଜ୍ଞାକୁ ଅବଜ୍ଞା ଦିନେ କରି ନାହୁଁ,
ଆଜ କାହିଁକି ରେ ବାପ, କଥା କହୁ ନାହୁଁ ?

ପ୍ରାଣରୁ ଅଧିକ ତୁ ଯାହାକୁ ଥିଲୁ କରି,
ସେ ବଜଳା କାନ୍ଦ ଲୋଟେ ତୋର ପାଦ ଧରି ।
ତା ବିକଳ ତଳେ ସହି ନ ପାରୁ ରେ ବାଳ,
ଆଜ କେମନ୍ତେ ମଜନେ ଶୋଇଛୁ ଭୂତଳ ?
ଉଠ ବାପଧନ ! ମୋର ମାନ ରେ ବଚନ,
'ମାଅ' ବୋଲି ଥରେ ମାଏ ଡାକ ତୁ ବଦନ ।
ଅନ୍ଧ ଶ୍ରୀ-ନୟନ-ତାରା, ବିହୁନେ ରେ ତୋର
ଦଶ ଦିଗ ଦିଶେ ମୋର ନେତ୍ରେ ଅନ୍ଧକାର ।
ଉଠ ଗଳାମାଳୀ ଦୁର୍ଗା ପୂଜିବୁ ତୁ ପରା !
ହୋଇଛୁ ଉଚ୍ଛୁର, ଫୁଲ ଝାଉଁଳିଲା ପରା ।
ବନ୍ଧୁ ରଖିଅଛୁ ଅନ୍ନ ଉଠି ଭୁଞ୍ଜ ବାବୁ,
କ୍ଷୁଧାରେ ଅକୁଳ ତନୁ, କପାଇଁ ଶୋଇବୁ ?
ଉଠ ରେ ଅଞ୍ଚଳନିଧି ଆନନ୍ଦପ୍ରତିମା,
ନୟନ ମେଲଇ ଥରେ, ମୁଖକୁ ତୁ ଅନା ।
ସତେ କି ରେ ଦୁଃଖିଧନ ଉଠିବୁ ତୁ ନାହିଁ !
କେମନ୍ତେ ଧରିବି ପ୍ରାଣ ତୋତେ ମୁଁ ହରାଇ ?
ତୋ ମଧୁର ହସହସ ସୁନ୍ଦର ଆନନ
ନ ଦେଖି କେମନ୍ତେ କହ ରହିବ ଜୀବନ ?
ରେ ଶୋକପାସୋରା, ଗୃହିଁ କାହା ଚନ୍ଦ୍ରମୁଖ
କାଟିବି ମୁଁ ଦିନ ? କରିଗଲୁ ତୁ କିରେଖ ।'
'ଅହା ରେ କୁମର ମୋର' ବୋଲିଣ ଭୂତଳେ
ମୂର୍ଚ୍ଛିତା ହୋଇଣ ଢଳି ପଡ଼ିଲେ ବଜଳେ ।
ବେଦନରତ ପିତାଙ୍କ ଶୁଶ୍ରୂଷା ଫଳରେ
ସଂଜ୍ଞା ଲଭି କରି ପୁଣି କାନ୍ଦିଲେ ଉଚ୍ଚରେ ।

ବକ୍ଷେ ଶିରେ କର ହାଣି ଉନ୍ମାଦନୀ ପ୍ରାୟ
କାନ୍ଦନ୍ତେ ବଧୀର୍ଣ୍ଣ ଶୋକେ କାନନ ହୃଦୟ ।
ପିତାହିଁ ଅକୁଳେ ଅଶ୍ରୁ କରନ୍ତ ବର୍ଷଣ,
ହୋଇଲା ଏମନ୍ତେ ଅସି ଦବା ଅବସାନ ।
ଅନିତ୍ୟ ଜଗତ, ମିଥ୍ୟା, ନଶ୍ୱର ସଂସାର,
ଜାଣି ପିତା ଧୈର୍ଯ୍ୟେ କଲେ ରୋଦନ ସମ୍ବର ।
ନାନା ଉପଦେଶେ ପ୍ରବୋଧନ୍ତ ଜନନୀକୁ,
ଦାହ ଅର୍ଥେ ନେବେ ବୋଲି ମୃତ କୁମରକୁ ।
କୋଳେ ମାତା ଅବୋରନ୍ତ ଛଳେ ନ ଛାଡ଼ନ୍ତ,
କୁରରୀ ପ୍ରାୟ ଅକୁଳେ ରୋଦନ କରନ୍ତ ।
କ୍ଷଣେ କ୍ଷଣେ ଝାମ ଯାଇ ଗଡ଼ନ୍ତ ଧରାରେ,
ତପ୍ତଲୌହପାଟେ ମତ୍ସ୍ୟ ହୁଏ ଯେ ପ୍ରକାରେ ।
ନିରୁପାୟେ ପିତା ତେଣୁ ଚିନ୍ତିତ ଅନ୍ତର,
ମୂର୍ଚ୍ଛିତା ମାତାଙ୍କ କୋଳୁ ଭାଇଙ୍କୁ ମୋହର
ଘେନିଗଲେ ବଳେ, ଏହି ଜଗତୀର କଳେ
ସମର୍ପଣ କଲେ ଭ୍ରମ ଚିତାନଳକୋଳେ ।
ସେଦିନୁ ତାହାଙ୍କୁ ଝୁରି ଜନନୀ ମୋହର
ଉନ୍ମାଦନୀ ପ୍ରାୟେ ହେଲେ ଅକୁଳ ଅନ୍ତର ।
ପାନ ଭୋଜନକୁ ବିଷସମାନ ମଣିଲେ,
ଶେଷେ ଉତ୍କଟ ଉଦରପୀଡ଼ାରେ ପଡ଼ିଲେ ।
ଭାଇଙ୍କ ମରଣେ ବେନି ମାସ ଗତ ହେଲା,
ମାତାଙ୍କର ବ୍ୟାଧି କ୍ରମେ ଦୁରାରୋଗ୍ୟ ହେଲା ।
ଦିନେ ପିତାଙ୍କୁ ସମ୍ବୋଧି କହିଲେ ମା ମୋର
ବିଶୁଷ୍କ ଆନନେ, ଅଶ୍ରୁବାରି ଦରଦର

ବହିଯାଉଥିଲି ଅହା ବିଶାଳ ନୟନ୍ତୁ,
ସେ କୋମଳ ବକ୍ଷେ ରଖି ମୋର କ୍ଷୁଦ୍ର ତନୁ ।
କହିଲେ କାତରକଣ୍ଠେ, କ୍ଷୀଣ ମୃଦୁ ସ୍ୱରେ,
'ନାଥ ! ରଖ ଏ ନିଧିଟି ହୃଦୟ-ଭଣ୍ଡାରେ ।
ବାଜୁଳିଭୂଷଣ ଭଳେ ଦେଖ ଭାଜନାର
କ୍ଷୀଣ ହୋଇଲାଣି କେତେ ଦୁର୍ବଳ ଶରୀର ।
ଘେନନ୍ତୁ ଚିର ବିଦାୟ, ଦିଅ ଶ୍ରୀପୟର—
ଧୂଳି ଦାସୀଶିରେ, ମୃତ୍ୟୁ ନିକଟ ମୋହର ।'
ହେଲେ ସେ ନୀରବ, ପୁଣି ମୋର କ୍ଷୁଦ୍ର ମୁଖ
ଚୁମ୍ବିଲେ ସସ୍ନେହେ," ଅହା ଶୋକସିନ୍ଧୁ ବକ୍ଷ
ଉଦ୍ବେଳିତ ବିକ୍ଷୋଭିତ, ଦାରୁଣ ଅଘାତେ
ହେଲି ଅଘାତିତ ବାଳା, ଆକୁଳିତ ଚିତ୍ତେ
ମୁଞ୍ଚେ ନୟନ-ଆସାର, କପୋଳ-କମଳ
ଧୌତ କରି ପଡ଼େ ବକ୍ଷେ ଉଷ୍ଣ ଅଶ୍ରୁଜଳ ।
ନିର୍ବାପିତ ଶୋକଅଗ୍ନି ଉଠେ ହୃଦେ ଜଳି,
ରୁଦ୍ଧ-ଶୋକସ୍ୱରେ ପୁଣି କହେ ଦୁଃଖୀ ବାଳୀ;
"ହେ ଦେବ ! ସମର୍ପି ମୋତେ ପିତାଙ୍କ ଚରଣେ
ମୁଦିଲେ ନୟନ ମାତା ଅନ୍ତିମ ଶୟନେ ।
'ମାଆ ମାଆ' ବୋଲି ଡାକ କାନ୍ଦିଲି ମୁଁ ଯେତେ,
ନ ଶୁଣିଲେ କର୍ଣ୍ଣେ ଅଉ ନ ଚୁହିଁଲେ ମୋତେ ।
ସେ ଦିନୁ ଚିରଅନାଥା ହେଲି ନିରମାଖି,
ମୋର ଦୁଃଖେ ହେଉଥାନ୍ତି ପିତା ଅତି ଦୁଃଖୀ ।
ମୋ ଅଲକ୍ଷ୍ୟେ କରୁଥାନ୍ତି ଅଶ୍ରୁ ବିସର୍ଜନ,
ଅବିରତ ଶୋକେ ନଷ୍ଟ ଅଟେ କି ନୟନ ।

ପଥ ପ୍ରଦର୍ଶିକାରୂପେ ଅନ୍ଧ ପିତାଙ୍କର
ସଙ୍ଗେ ଭିକ୍ଷା କରିଯାଏଁ ଯଷ୍ଟି ଧରି କର ।
ସାତବର୍ଷ ଦିନୁ ମାତା ଭ୍ରାତାଙ୍କୁ ହରାଇ
ଅଭାଗୀ, ଅନାଥା, ଶୋକସାଗରେ ଭାସଇ ।
ଏତେ ଶୋକ ଦୁଃଖେ ମୋର ଦାରୁଣ ପରାଣ
ନ ଯାଇ ନିର୍ଲ୍ଲଜ ପିଣ୍ଡେ ଅଛି ଅକାରଣ ।"
ଏତେ କହିଣ ସଜଳ-ଜଳଜ ନୟନା
ହୋଇଲା ମଉନ, କିବା ଶୋକନାଦୀ ବୀଣା
ହେଲା ସ୍ତବ୍ଧଭାବ, ଅହା ଉଠେ ହାହାକାର
ଅବଳା ହୃଦୟସରେ, ଅକୂଳ ଅନ୍ତର ।
ଯୁବତୀ ଦୁଃଖରେ ଦୁଃଖୀ ହେଲେ ଯୁବରାଜ,
ବାଷ୍ପପୂର୍ଣ୍ଣ ହେଲା ଗୁରୁ ନୟନ-ସରୋଜ ।
ଆଶ୍ୱାସି ବାଳାରେ ଧୀରେ ବୋଇଲେ ଏସନ,
"ଶଙ୍ଖାଳାକ୍ଷି ! ବୃଥା ଶୋକ କର କି କାରଣ ?
ଏସ୍ଥାନରେ ବସି ଯଦି ସହସ୍ର ବରଷ
କରିବ କ୍ରନ୍ଦନ, ଆଉ ଅଛି କି ଗୋ ଆଶ ?
ଆସିବେ କି ଫେରି ତବ ଜନନୀ ସୋଦର ?
ଗଲା ଜୀବନ କି କାହିଁ ଫେରେ ଶ୍ରୀପାବର !
ନିୟତିବଚନ ସତି, କରିବାକୁ ଆନ
କେ ଜନ୍ମ ଲଭିଛି ବିଶ୍ୱେ ହେବାକୁ ଭାଜନ ?
ଚକ୍ରନେମିକ୍ରମେ ସଦା ହୁଅଇ ଘୂର୍ଣ୍ଣିତ
ଭାଗ୍ୟଚକ୍ର ମାନବର, କେବେ ବା ପତିତ —
ଦ୍ୱୀପେ କରେ ଅଧୀଶ୍ୱର, ସ୍ୱର୍ଣ୍ଣସିଂହଶିରେ
ରଚେ ରତ୍ନସିଂହାସନ, ଅତଳ ପାତାଳେ

ପକାଏ ପଲକେ, ସେହି ନିୟତି ଶାସନେ
ହୁଏ ପଥର ପକ୍ଷୀର ଭାଗ୍ୟ ନିକ୍ଷେପଣେ ।
ଐନ୍ଦ୍ରଜାଲିକ ଯେସନେ କ୍ଷଣକେ ଦେଖାଇ
ଶୋଭାସମ୍ପଦ ବିଭବ, ପଲକେ ହରଇ,
ବାଜୀକର୍ତ୍ତ୍ରୀ ନିୟତି ଗୋ ତେସନ ଧରାରେ
ଦେଇ ଧନ, ଜନ, ପୁଣି ହରଇ ଅଚିରେ ।
ଅନିତ୍ୟ ଜଗତେ କିଛି ନୁହଇଟି ଚିର,
ଜୀବନ, ଯୌବନ, ଧନ କ୍ଷଣିକ, ଭଙ୍ଗୁର ।
ବୃଥା ଅଶ୍ରୁଜଳେ କିମ୍ପାଁ ଭାସ ଇନ୍ଦୁମୁଖୀ,
ତବ ଦୁଃଖେ ପ୍ରାଣ ମୋର ଅତିଶୟ ଦୁଃଖୀ ।”
ବୋଧନ୍ତେ ଏମନ୍ତ ଯୁବା ମଧୁର ବଚନେ,
ବୃଦ୍ଧଙ୍କ ଡାକ ଏକାଳେ ପଶିଲା ଶ୍ରବଣେ ।
ଚକିତେ ଚମକ ଚିତ୍ତେ କହେ ଚନ୍ଦ୍ରାନନୀ,
“ପିତାଙ୍କ ହକର ଦେବ ! ଦଅନ୍ତୁ ମେଲାଣି ।
ଏ ଭିକ୍ଷା ଚରଣେ ତବ ଦୀନା ଦରିଦ୍ରାର,
କୃପା ରଖିବ ଦାସୀରେ ଉଦାର ଅନ୍ତର ।”
ବୀରମୁଖେ ଗୃହିଁ କହି ପୋତିଲେ ତଳକୁ
ଆନନ, ଉତ୍ତରେ ଯୁବା “ଏକଥା କାହାକୁ
କହ ଅୟି କନକାଙ୍ଗି ! ଦେଖା ଦେଇ ଥରେ
ହୃଦୟ ସହ ଚିତ୍ତକୁ ନେଲ ଧାଡକାରେ ।
ଯାଉଅଛୁ ଆଜି, କାଲି ଆସିବ ଗୋ ପୁଣି,
ମାତ୍ର ପ୍ରାଣ ବନ୍ଧା ପିନା ରହିଲା ସଜନି ।”
ନୀରବ ବାଣୀ, ନୀରବ ଗୃହାଣୀ ବାଳାର
ନୀରବେ ପ୍ରତିଉତ୍ତର ହେଲା ଅଗ୍ରସର ।

ଖଣ୍ଡେ ଦୂର ଯାଇ ଖେଳାଖଞ୍ଜଗ୍ରୀବଭୂଷା
ଫେର ଗୃହିଁଲା ପଛକୁ, ହୋଇଲା ଅଦୃଶା ।
ଲୁଚଇ ବିଜୁଳି ଯଥା ଘନ ଅନ୍ତରାଳେ,
ଲୁଚିଲା ମହୀବିଜୁଳି ବନ ଅନ୍ତରାଳ ।
ଗୃହିଁଥିଲେ ଯୁବାମଣି ପଲକବିହୀନ,
ଅଦୃଶ୍ୟ ହୁଅନ୍ତେ ବାମା ବୀରଙ୍କ ନୟନ
ଫେରିଲା ସେ ଦିଗୁଁ, ଦୀର୍ଘଶ୍ୱାସ ଛାଡ଼ି ବୀର
ଫେରିଲେ ନଗରେ ଚଢ଼ି ତୁରଙ୍ଗ ଉପର ।
ଯୁବକ ହୃଦତନ୍ତ୍ରୀରେ କରୁଣ ଝଙ୍କାରେ
ବାଜେ ବିକଳାର ଶୋକ-କାହାଣୀ ମଧୁରେ ।
ଶୁଣି ଶୁଣି ତରୁଣୀର ବାଣୀ ବୀଣାସ୍ୱର,
ଗମ୍ଭୀରୁ ଗମ୍ଭୀରତର ଦୁଃଖାନ୍ତ କୁମାର ।
ସଧୀର କଦମେ ବାଜୀ ବହି ବୀରବରେ
ନଗରେ ପ୍ରବିଷ୍ଟ ହେଲା, ଅସ୍ତଗିରି ଶିରେ
ବୁଡ଼ିଲେ ତପନ, ରଙ୍ଗବସନା ସୁନ୍ଦରୀ
ବାରୁଣୀରାଣୀ ବନ୍ଦାଇ ନେଲା କୋଳ କରି ।

---

## ଦ୍ୱିତୀୟ ସର୍ଗ

ମଧୁର ଶରତ, ଶ୍ୟାମ ଘନବନଛବି,
ଅପରୂପେ ସାଜିଛନ୍ତି ଯାହା ଦେବି ଭବି ।
ଅପରାହ୍ନ ସମୀରଣ ମୃଦୁଳ ମଧୁର
ବହେ, ପତ୍ରେ ପତ୍ରେ ବାଜି ଶୁଭେ ସରସର ।

ନାନାଜାତି ବିହଙ୍ଗର ସୁଲଳିତ ଗାନ
କାକଳିକଲ୍ଲୋଳେ ପୂରେ ସେ ରମ୍ୟକାନନ ।
ଲହରେ ଲହରେ ପୁଷ୍ପ ସଉରଭରାଶି
ଭାସି ବନାନିଳେ ନୀଳନଭେ ଯାଏ ମିଶି ।
ବନଫୁଲ ପରାଗ ମୁଖରେ ହୋଇ ବୋଳି
ଗୁଣୁ ଗୁଣୁ ଗୀତ ଗାଇ ଉଡ଼ୁଥାନ୍ତି ଅଳି ।
ଝିଙ୍କାରିଝଙ୍କାର ନାଦେ ନିନାଦିତ ବନ,
ରହି ରହି ଶୁଭେ କେବେ ଗୁଣ୍ଡୁଚିର ସ୍ୱନ ।
ମୁନିମନସମ ଅହା ପ୍ରସନ୍ନ ନିର୍ମଳ,
ସଧୀରେ ବହେ କବ୍ଳୀ ତରଳ ସଲିଳ ।
ହଂସ ହଂସୀ ସୁଖେ କରୁଥାନ୍ତି ସନ୍ତରଣ,
ପ୍ରତିକୂଳ ସ୍ରୋତେ, ଅନୁକୂଳ ସମୀରଣ
ଖେଳାଏ କି ରଙ୍ଗେ ! ଯଥା ଶ୍ୱେତ ଶତଦଳ
ସନାଳ ଦୋହଲି ଖେଳ ଦଶଇ ମଞ୍ଜୁଳ ।
ଝଲସେ ମାର୍ତ୍ତଣ୍ଡକରେ ବନରାଜିଲୀଳା,
କାହିଁ କରେ ଗୃହୁଚନ୍ଦ ଇନ୍ଦ୍ରଧନୁ ଖେଳା ।
କାଳିନ୍ଦୀକୂଳ-କାନନେ ଶ୍ୟାମ ବନମାଳୀ
ବିରସ ମନେ କିଶୋରୀ ଆଗମନ ଭାଳି
ବିଶାଳଶିଳା ଉତ୍ସଙ୍ଗେ ବସିଣ ଦ୍ୱାପରେ
ଚାହିଁଥିଲେ ପଥପାନେ, ମଞ୍ଜୁଳ କୁଞ୍ଜରେ
ଯେମନ୍ତ, ତେମନ୍ତ ଅଜି ତରୁଣୀମଣ୍ଡଳୀ
ଯୁବରାଜ ବୀରେନ୍ଦ୍ରକୁମାର କଥା ଭାଳି
ବିଜଳୀ ପ୍ରିୟପଥର ଉପରେ ବସିଣ
ଚାହିଁଛନ୍ତି ପଥପାନେ ଉଦ୍ବିଗ୍ନନୟନ ।

କାନନ-ପ୍ରକୃତିରାଣୀ କୋଟିଶଭ କମ
ନ ଦେଖେ, ନ ଶୁଣେ କାନେ କର୍ଣ୍ଣରସାୟନ
ବନବନ୍ଦୀ ବନ୍ଦୀବ ବନ୍ଦନା ସୁସ୍ୱନ;
ସୁରଭି ମଲୟ ମୋହୁ ନାହିଁ ବୀରମନ ।
ପ୍ରେମମନ୍ତ୍ରମୁଗ୍ଧମତ ପ୍ରେମମୁଗ୍ଧ ପ୍ରାଣ,
ବିକଳା ଅଗମପଥ କରିଅଛୁ ଧ୍ୟାନ ।
ଯୁବା ଅଗେ ଉଭା ହେଲା ଅଙ୍ଗଣା ସହସା
ବିକଳା ରୂପଛଣ୍ଟସ୍ୱ ନାସ୍ୱିଶିରେଭୂଷା ।
କକ୍ଷେ ଶନ୍ୟକୁମ୍ଭ, ବିମୁକ୍ତ କୁନ୍ତଳରାଶି,
ଦରହାସ-ସୁଧା ଉଦ୍ଗାରେ ଶ୍ରୀମୁଖ-ଶଶୀ ।
ସଲଜମୁଖୀ କଳସୀ ଭୂମିତଳେ ରଖି
ଚହିଲା ନୀରବେ ବାଳା ରାଜବାଳା ଦେଖି ।
ସମ୍ଭାଷି ସାଦରେ ବୀର ବୋଇଲେ ମଧୁରେ,
"ଅସିଲଣି ବହୁକ୍ଷଣୁ ତବ ଅପେକ୍ଷାରେ ।,
ସୁନ୍ଦରି ! ବିଶ୍ରମ ବସି ପାଶରେ ମୋହର,
ମନ ଚୈର କର କେତେ ଥିବ ରମାବର ।
କାଲି ନେତ୍ରେ ଦେଖିଲା ବେଳରୁ ମୁଖଗୁରୁ
ମୁହୂର୍ତ୍ତେ ପାସୋର ମୋର ନ ଯାଏ ମନରୁ ।
ପୁଷ୍ପଧନୁ ପୁଷ୍ପଶର ଅଘାତେ ନବୀନା !
ହୃଦ-ଧୈର୍ଯ୍ୟଭିତ୍ତି ମୋର କରିଅଛି ଚୂନା ।
ଅସ ବାହୁପାଶେ ମୋତେ ବାନ୍ଧ ଚାରୁହାସୀ,
ସନ୍ତାପସଲିଳେ ସଖି ଯାଉଅଛୁ ଭାସି ।"
ଏତେ କହି ଆଲିଙ୍ଗନ ଆଶୟେ ଅଧୀର,
ବାହୁ ବିସ୍ତାରିଲେ ଅଗ୍ରସର ବୀରବର ।

ବୀରମଣିବାଣୀ ଶୁଣି ବିଜଳା ହୃଦୟ
ଲଜ୍ଜା ଭୟେ ହୋଇଥିଲା ଅତ୍ୟନ୍ତ ଅଥୟ ।
ବିବେକ ସଙ୍ଗେ ପ୍ରେମର ଘୋରତର ରଣ
ହୁଏ ବାଳା ହୃଦକ୍ଷେତ୍ରେ, କମ୍ପିତ ପରାଣ ।
କେବେ ହାରଇ ବିବେକ, ପ୍ରେମ ହୁଏ ଜୟୀ,
ଉତ୍ପନ୍ନ ଉପ୍ରାଣେ ଅହା ଥରେ ପ୍ରେମମୟୀ ।
କଷ୍ଟେ ପରାଜିଲା ବିଶ୍ୱବିଜୟୀ ପ୍ରେମକୁ,
ବିଜୟୀ ହେଲା ବିବେକ ଦାଇବିବଳକୁ ।
କୁମାରର ପ୍ରୀତି ଦେଖି କନକଗଞ୍ଜିତ
ଶୁଭ୍ର ନେତ୍ର-ଇନ୍ଦୀବର ନୀରପୂର୍ଣ୍ଣ କରି
ନତଜାନୁ ବାମା ବସି ଯୁବା ପଦତଳେ
କାତର-କମ୍ପିତକଣ୍ଠେ କହିଲା ବିକଳେ,
"ହେ ରାଜକୁମାର ! ନୀତିଶାସ୍ତ୍ର ଅବିଦିତ
ନାହିଁ ତବ, ମାତ୍ର ଏହି ବଚନ ଅମୃତ
ତପ୍ତ ମଧୁଧାରାସମ ହୃଦେ ଅଭାଗୀର
ଢାଳିଲା, ଚିରତୃଷ୍ଣାର୍ତ୍ତ ମୁଖେ ଉଷ୍ଣ ନୀର ।
ଭବି ଦେଖ ଦଇବ୍ୟନେତ୍ରେ—ଦୁହିତା ଉପର
ପୂର୍ଣ୍ଣ ଅଧିକାର ପିତା ଥାଏ ଜନକର ।
ସେ ପିତା ଅଜ୍ଞାତେ ମୋର ଦୀନହୀନ ପ୍ରାଣ
କେମନ୍ତେ ତବ ଚରଣେ କରିବି ଅର୍ପଣ ?
ପଥଭିକାରୁଣୀ ସତ୍ୟ, ଅଜନ୍ମ-ଦୁଃଖିନୀ,
ଚିରହତଭାଗୀ, କିନ୍ତୁ ସ୍ୱଇଚ୍ଛାଚାରିଣୀ
କରି ନାହାନ୍ତି ବିଧାତା, ଭୟ ହୁଏ ପ୍ରାଣେ;
ଲତାକୁଳୀ ଲଜ୍ଜା କିବା କର ପରଶନେ ।

ଅରପିବ ଯେବେ ଦାସୀ ହୃଦୟେ ହୃଦୟ,
ନ ରହିବ ଗୁପ୍ତ, କାଳେ ଗୋପନ ପ୍ରଣୟ
ଜନ ଶତମୁଖେ ଫୁଟି ବାହାରିବ ବଳେ,
ଶତ ପ୍ରସ୍ତ ବସ୍ତ୍ରେ ଯଥା ଅନଳ କୁହୁଳେ ।
ଘୃଣିତ ଜୀବନେ ଦେବ ! କିବା ପ୍ରୟୋଜନ,
ତହୁଁ ଶତଗୁଣେ ଶ୍ରେୟ ଏଥିଦେ ମରଣ ।
ଅଧିକ କ ଭାଗ୍ୟ ? ତୁଚ୍ଛ ଗୁପ୍ତପ୍ରେମ ଭ୍ରମେ
ନ ବୁଡ଼ିବ ମୁଁ କଳଙ୍କପଙ୍କେ ଅକାରଣେ ।
ଦୟା କରି କହ ମୋର ଜନକ ଛାମୁରେ
ଚଢ଼ୁଅଛୁ ପାଦତଳେ କ୍ଷମ ଅବଳାରେ ।”
ପଡ଼ିଲା ପୟରେ ଅଶ୍ରୁ-ମୁକ୍ତାମାଳିନୀ,
ଲୋଟେ କିବା ବୃନ୍ତଚ୍ୟୁତ ହେମ-କମଳିନୀ,
ଶିଶିରକଣିକା ଧନୀ ଭାନୁଦେବତଳେ,
ଧରିଲେ ସାଦରେ ବୀର ତା କରକମଳେ ।
ତୋଳି ଭୂତଳୁ ବୋଇଲେ, “ଉଠ ପିକଭାଷି !
ବୃଥା ଭୟସ୍ରୋତେ କପାଁ ଯାଉଅଛ ଭାସି ।
ଯା କହିଲ ସତ୍ୟ ସଖି ! ବଚନ ତୁମ୍ଭର
ଶୁଣି ଅନନ୍ତ ହେଲା ଅନ୍ତର ମୋହର ।
ଆସ ଶଶିମୁଖି ! ଯହିଁ ମାଳବନରେଶ,
ଯିବା ତହିଁ, ପୂରାଇବେ ସେ ଅମ୍ଭର ଆଶ ।
ମାନ ଏହା ଧ୍ରୁବ ଜାଣିଥିବୁ ଚନ୍ଦ୍ରାନନା,
ଜୀବନ ମୋର ବିଫଳ ହେବ ତୋହ ବିନା ।
ଆଚରଣ ବ୍ରହ୍ମଚର୍ଯ୍ୟ, ପାଳନ କରିବ
ଚିରକୌମାର୍ଯ୍ୟ, ନିରାଶ ହୃଦ ଯେବେ ହେବ ।

ଯୁବାବାଣୀ ଶୁଣି ବାମା ଉଠିଲ ସଧୀରେ,
କର ସଂସ୍ପର୍ଶେ ତନୁଲତା ମୃଦୁ ଥରେ ।
ଚଳିଲେ ଉଭୟେ, ବସିଛନ୍ତି ପୁରଞ୍ଜୟ,
ଦୁହିତା ବିଳମ୍ବ ଦେଖି ଚିନ୍ତିତ ହୃଦୟ ।
ପାଦଶବ୍ଦ ଶୁଣି କର୍ଣ୍ଣେ କହିଲେ ମଧୁର,
"ଆଜ ଏତେ ବିଳମ୍ବ କିପାଇଁ ମାଆ ମୋର ।
ଏକମାତ୍ର ପରାଣସଙ୍ଗିନୀ ମୋର ତୁହି,
ଲବେ ଅଦର୍ଶନେ ଆକୁଳିତ ହୁଏ ମୁହିଁ ।
ଜାଣି ନାହୁଁ କଲେ ମାଆ ! କରୁ ତୁ ଉତ୍ତର ?
ତୁନି ରହିଲୁ କାହିଁକି ? ଶୁଣି ବୃଦ୍ଧଗିର
ସଲଜେ ବଜଳା ଲୁଚି ହୋଇଅଛୁ ଉଭା,
ଅଗ୍ରସର ସମ୍ମୁଖେ ବୋଇଲେ ଧୀରେ ଯୁବା ।
"ନୋହେ ମୁଁ ବଜଳା ତବ, ଧେନନ୍ତୁ ପ୍ରଣାମ,
ହରିପୁର ଯୁବରାଜ ବୀରେନ୍ଦ୍ର ମୋ ନାମ ।"
ନିବେଦ ବସିବାପାଇଁ ଆଗମ କାରଣ,
ପୁଛନ୍ତେ ବିନୟେ, କହେ ନରେନ୍ଦ୍ରନନ୍ଦନ,
"ହେ ଦେବ ! ପ୍ରାର୍ଥନା କରୁଥିବାରୁ ମୋହର,
ଅସିଥିଲି ଆଜ ଏହି କୁଟୀରେ ତୁମ୍ଭର ।"
ବିସ୍ମୟେ ବୋଇଲେ ବୃଦ୍ଧ, "ନୃପତିନନ୍ଦନ
ଅଟ ତୁମ୍ଭେ, ମୁହିଁ ଦୀନ ହୀନ ଅକିଞ୍ଚନ ।
କି ଆଦେଶ ଆଜ ତବ ଏ ଦୀନ ଦୁଃଖୀରେ ?
ରାଜଆଜ୍ଞାରେ ପରାଣ ଅର୍ପି ମୁଁ ପାରେ ।"
ଶୁଣି ବୀରେନ୍ଦ୍ରକୁମାର ଭାବ ମନୋଗତ
ଅକପଟହୃଦେ ସର୍ବ କରିଲେ ବିଦିତ ।

ଯୁବା-ବାଣୀ ଶୁଣି ମୁଖ ଦିଶିଲା ପ୍ରସନ୍ନ,
ପଲକେ ପଲକେ ଚିନ୍ତା ସୁବିଷାଦ-ଘନ
ଢାଙ୍କିଲା ହୃଦଅକାଶ, ତେଜି ଦୀର୍ଘଶ୍ୱାସ,
ସଧୀରେ ବୋଇଲେ ବୀରେ, "ଅତି ଅବିଶ୍ୱାସ
ଲାଗଇ ଶ୍ରବଣେ, ତୁମ୍ଭେ ନରପତିଙ୍କର
ଏକଇ କୁମାର ସର୍ବ ଆଦରର ସାର ।
ଭିକାରିଦୁହିତା ଦୀନା ହୀନା ଭିକାରୁଣୀ,
ସେ କି ହେବ ତବ ଯୋଗ୍ୟା ଜୀବନସଙ୍ଗିନୀ ?
ଶୁଣି କି କହିବେ ତବ ଜନନୀ ପିଅର !
ତବ ବାଣୀ ବିଶ୍ୱାସି ନ ପାରେ ବୀରବର ।
ଅଜ୍ଞାତ କୁଳଶୀଳାରେ କରିଲେ ବରଣ
ଅନ୍ତରେ ବହିବେ ଖେଦ ମୟୂରଭଞ୍ଜନ ।
ନାହିଁ ମୋ ଆପତ୍ତି, ମାତ୍ର"—ଯୁବା ବାଧା ଦେଲେ
ସେ ବଚନସ୍ରୋତେ, ପୁଣି ବିନୟେ ବୋଇଲେ,
"ପିତାଙ୍କ ଗୋଚରରେ କିଛି ନାହିଁ ପ୍ରୟୋଜନ,
ଉତ୍କଳ-ସମ୍ରାଟ ଶ୍ରୀପୁରୁଷୋତ୍ତମ ନାମ,
କାଞ୍ଚି ଘୋରଯୁଦ୍ଧେ ହୋଇଅଛନ୍ତି ପ୍ରବୃତ୍ତ,
ସର୍ବ ଉତ୍କଳୀୟ ନୃପତିଙ୍କ ମୋର ତାତ
ରଣନିମନ୍ତ୍ରଣେ ଦେବ ! ସେ ମହାଆହବେ
ଯାଇଛନ୍ତି, କେ କହିବ ଲେଉଟିବେ କେବେ ?
ଗାନ୍ଧର୍ବବିଧିରେ ଏବେ କରନ୍ତୁ ଅର୍ପଣ,
ପିତାଙ୍କ ସମକ୍ଷେ ପୁଣି କରିବି ଗ୍ରହଣ ।"
ଏ ପ୍ରସ୍ତାବେ ସନମତ ହେଲେ ପୁରଞ୍ଜୟ,
ସଙ୍କେପେ କୁମାରେ ଦେଲେ ଅଳ୍ପପରିଚୟ ।

ଏକାଳେ ବିଜଳା ଜଳକଳସୀ ଘେନିଣ
ଅନ୍ତରାଳୁ ବାହାରି ଆସିଲ ସେହି ସ୍ଥାନ ।
ଶବଦେ ଜାଣି ଜନକ କହିଲେ ବାଳାରେ
ବାତ୍ସଲ୍ୟପୂରିତପ୍ରାଣେ ଆନନ୍ଦ ଅନ୍ତରେ,
"ନନ୍ଦେ ! ଅତିଥି ରେ ଆଜ ଏହି ଯୁବରାଜ
ଆମର କୁଟୀରେ, ଏଣୁ ଶୁଭଦିନ ଆଜ ।
ଆତିଥ୍ୟସତ୍କାରେ କର ତାଙ୍କ ସମ୍ବର୍ଦ୍ଧନା,
ସମର୍ପି ଜୀବନ ତୋଷ, ନୋହିଣ ବିମନା ।"
ସରସୀଜମୁଖୀ ଲଜେ ନ ଦେଲ ଉତ୍ତର,
ସଘନ ହରଷେ ତନୁ ଥରେ ଥର ଥର ।
ଲଜପାଟଳକପୋଳା, କମଳ ଆନନେ
ଅନୁରାଗ ପ୍ରକଟିତ, ଦେଖି ତୋଷମନେ
ଲୋହିତ ସାଗରେ କିବା ବୁଡ଼ିଲେ ତପନ
ଲୋହିତକରେ ଝଳାଇ ପଶ୍ଚିମ ଗଗନ ।
କଲ୍ଲୋଳୀର କୂଳେ କୋକବଧୂ ଦୁଃଖମନେ
ବିଦାୟବ୍ୟଥିତ ହୃଦେ ପ୍ରିୟତମ ପାନେ
ଚାହିଁ ବିକଳେ ବାହୁନି ମାଗଇ ମେଲାଣି,
ରବିପାନେ ନିରେଖେ ଲେଉଟି ଚାହେଁ ପୁଣି ।
ଘନ ବନକୋଳୁ ଉଭେ ହେଲେ ସନ୍ଧ୍ୟାରାଣୀ,
ତାମସୀ ଛାୟା ଢାଙ୍କିଲା ଆକାଶ ଅବନୀ ।
ଗୋଟି ଗୋଟି ଫୁଟି ତାରା ସୁନୀଳ ଗଗନେ
ବଧୂ ବନ୍ଦାପନା ଆଣେ ଦେବବାଳାଗଣେ
ଜାଳିଲେ ଉଜ୍ଜ୍ୱଳମୟୀ ହେମ ଦୀପମାଳା,
କଲ୍ଲୋଳିନୀରେ ଖେଳିଲା ପ୍ରତିବିମ୍ବମାଳା ।

ରଜନୀ ଅଗତ ଦେଖି ବୀରେନ୍ଦ୍ରକୁମାର
କେଲେ ମେଲଣି ବୃଦ୍ଧଙ୍କୁ କରି ନମସ୍କାର ।
ବୋଇଲେ ମାଳବଭୂପ,"ବାବୁ, ବାଂଧନ,
କରୁଥିବ ଏ ଦୀନ କୁଟୀରେ ପଦାର୍ପଣ ।
କାଶ୍ୟମରୁରେ ବସ୍ର ! ତବ ଦରଶନେ
ଅଶାପୂତ ମନ୍ଦାକିନୀ ବହିଲ ପରାଣେ ।"
"ଯାଉଛି ମୁଁ ପାସୋରିବ ନାହିଁ ସମାଚାର !
ଅକର ବିଦାୟ ଦିଅ ଯିବି ମୁଁ ନଗର ।"
ବାମା କରକମଳ ଧରିଣ ବୀରମଣି
କହନ୍ତେ ଏମନ୍ତ, ଭୂମି ଗୃହିଁ ଏଣୀକ୍ଷଣୀ
କହିଲା କାତରକଣ୍ଠେ କୋକିଳବଚନା,
"କାଲି ଅସିବ, ଚରଣେ ଏତକ ପ୍ରାର୍ଥନା ।"
'ହେଉ' କହି ବାହୁଡ଼ିଲେ ପୁରେ ବୀରବର,
କ୍ରମେ ହେଲେ ସେ ଅଦୃଶ୍ୟ ନେତ୍ରୁ ବାଳାର ।

---

## ତୃତୀୟ ସର୍ଗ

ନବୀନାମଣି ନବୀନ ଗାନ୍ଧର୍ବବିଧିରେ
ବନ୍ଧ ସମ୍ପାଦିଲେ ପ୍ରେମ-କୁସୁମମାଳାରେ ।
କାନନ ଭ୍ରମଣିଛଳେ ନିତ ଯୁବାମଣି
ଅସନ୍ତି, ଅଗମପଥ ଗୃହିଁ ଚନ୍ଦ୍ରାନନୀ
ବସିଥାଏ, ସେ ବିଜନ ବିପିନେ ଏକାକୀ,
କାନ୍ତ ଦରଶନ ଆଶେ ଯଥା ସୂର୍ଯ୍ୟମୁଖୀ ।

ଧନ୍ୟ ଦିନ ପୀରତି ବଢ଼ିଲା ଦୋହିଙ୍କର,
ହେଲେ ଅଭିନ୍ନପରାଣ ଯେସନେ କ୍ଷୀର ନୀର ।
ଘନ ମଞ୍ଜୁଳ କାନନେ ପ୍ରଦୋଷବିହାର,
କୁଞ୍ଜବନେ ଯଥା ରାଧାସଙ୍ଗେ ମାଧବର ।
ବନକୁସୁମରେ ରଚି ଭୂଷଣ ସୁନ୍ଦର
ସଜାଏ ଶୋଭାଙ୍ଗୀ ତନୁ ରସିକପ୍ରବର ।
କେବେ ନବପଲ୍ଲବ ତଳପ ପରେ ବସି
କାନ୍ତସଙ୍ଗେ ପଶାଖେଳ ଖେଳେ ମୃଦୁହାସୀ ।
ଛଳେ ନବବାଳୀ କେବେ ଲତା ଅନ୍ତରାଳେ
ଲୁଚନ୍ତେ, ଡାକଇ ଯୁବା ବିରହ ବ୍ୟାକୁଳେ ।
ବନବିହାରିଣୀ ହରିଣୀସମ ସହସା
ମନ୍ଦେ ହସି ଦିଏ ଦେଖା ସରସୀଜଦୃଶା ।
କାତରମୁଖେ ଯୋଡ଼ିଣ କୋକନଦ କର
କହେ କାନ୍ତେ ମୃଦୁ, "ମୋର ଦୋଷ କ୍ଷମା କର ।"
ବଜାନ୍ତେ କୁମାର କେବେ ବୀଣାସପ୍ତସ୍ୱର,
ବାଣୀ ବୀଣାନିନ୍ଦସ୍ୱରେ ଗାଏ ଜବାଧରା ।
ପ୍ରେମ ଉଚ୍ଛ୍ୱସିତ ମନେ କ୍ଷଣେ କ୍ଷଣେ ରହି
ଗାଏ ଯୁବା, ସୁଧାତାନେ ସ୍ୱରତାନ ମିଶାଇ ।
ପନ୍ନେ ପୁଷ୍ପେ ସାଜି କେବେ ସୁଚାରୁ ତରଣୀ
ଭସାନ୍ତି ତଟିନୀ ନୀରେ, ଯେମନ୍ତେ ହଂସିନୀ
ନାଚେ ସଲିଳ ହିଲ୍ଲୋଳେ ସଙ୍ଗୀତର ତାଳେ
ଜଳକ୍ରୀଡ଼ା କରନ୍ତି ଦୋହିଏ କୁତୂହଳେ ।
ନାନା କଉତୁକେ ନାନା କ୍ରୀଡ଼ାମୋଦେ ମାତି
କାଟୁଥିଲେ ଦିନ ସୁଖେ ସେ ନବଦମ୍ପତି ।

ଦିନୁଁ ଦିନ ନବ ପ୍ରୀତି ବଢ଼ିଲା ବେନିର,
• ହୃଦ ଏକାକାର କିବା ନଦୀ-ପାରାବାର ।
ଯୁବତୀ-ମନ-ଉଦ୍ୟାନେ ଫୁଟନ୍ତେ ଯେ ସୁମନ,
ଯୁବା-ହୃଦ-ଦରପଣେ ବିମ୍ବଇ ତକ୍ଷଣି ।
ପ୍ରେମତଟିନୀ ନବୀନା, ଯୁବା ପ୍ରେମସିନ୍ଧୁ,
ବାମା ପ୍ରଣୟ-ପଦ୍ମିନୀ, ପୁଂସ ଦୀନବନ୍ଧୁ ।
ଯୌବନ ଉଦ୍ୟାନେ ବାଳା ପାରିଜ-ସୁମନ,
ଯୁବାମଣ୍ଡଳ ତହିଁକ ବସନ୍ତରାଜନ ।
ପ୍ରେମାକାଶେ ନବ-ପୂର୍ଣ୍ଣ ସୁଧାଂଶୁ କୁମାର;
ଗୃହଚନ୍ଦ୍ର ଅନନ୍ୟା ଚନ୍ଦ୍ରିକା ମନୋହର ।
ପ୍ରେମକାନନ-କୁରଙ୍ଗ-କୁରଙ୍ଗିନୀ ସମ,
କରନ୍ତି କାନନେ ନାନା କ୍ରୀଡ଼ା ମନୋରମ ।
ବେନିଙ୍କ ଆନନ କରବାରେ କି ଦର୍ଶନ,
ବେନିଙ୍କ ନୟନ ବିଧି କରିଲା ସୃଜନ ।
ବେନିଙ୍କ ଭାବ ଭୁବନେ ବେନିଙ୍କ ହୃଦୟ
ଅବିରତ ହୋଇଥିଲା କି ଅବା ତନ୍ମୟ ।
ନବ ପଲ୍ଲବେ ବିରଚି ନବୀନ କୁଟୀର
କରନ୍ତି ବିହାର ତହିଁ କିଶୋରୀ କିଶୋର ।
କେବେ ଅବା ଯାଏ ଯୁବା ଆପଣା ନଗରେ,
କେବେ ପୁହାଏ ଯାମିନୀ ସେ ସ୍ୱର୍ଗ-କୁଟୀରେ ।
ମୁହୂର୍ତ୍ତ ବିଚ୍ଛେଦ କୋଟି ଯୁଗ ମଣୁଥାନ୍ତି,
ବେନିଙ୍କ ହୃଦ ବେନିକି ଛାଡ଼ି ନ ପାରନ୍ତି ।
ଦିନେ ବାରିଜାକ୍ଷୀ ସେହି ବିଜନ କୁଟୀରେ
ପ୍ରିୟତମ ଆଗମନ ଆଶାରେ ଅଧୀରେ

ବସିଅଛୁ ବିରଙ୍ଗୀ ବିରହାକୁଳ ପ୍ରାଣେ,
ଦୀର୍ଘଶ୍ୱାସ ତେଜି ଯୋଷା ଭାବେ ମନେ ମନେ ।
"କାହିଁଅଛ ନାଥ ! ମୋର ହୃଦାକାଶଶଶୀ,
ବୁଡ଼ିଲେଣି ଦିନମଣି ନିଶି ହେଲା ଆସି,
'ଏକ୍ଷଣି ଆସିବି' କହି କାହିଁ ଏଡ଼େ ମଠ
କଲ ପ୍ରାଣେଶ ! କି ବିଶା ହେଲା ଆଜ ବାଟ ?"
ଅମଙ୍ଗଳ ଆଶଙ୍କାରେ ଆଶଙ୍କିତା ଧନୀ,
ଅଞ୍ଚଳେ ପୋଛିଲା ଅଶ୍ରୁବାରି ସୁଲୋଚନୀ ।
କୁଟୀରୁ ବାହାରି ଭ୍ରମେ କୁସୁମିତ ବନେ,
ଆହତ କୁରଙ୍ଗୀ କାନ୍ତବିହୀନେ ଯେସନେ ।
ବିଚ୍ଛେଦ-ବିରହଜରେ ଅତନୁର ଶରେ—
ଜରଜରପ୍ରାଣେ ବାଳା ଭ୍ରମେ ଅଙ୍ଗନାରେ ।
ଫୁଲ୍ଲ ଜ୍ୟୋତ୍ସ୍ନା ଆଲୋକିତ ସେ ଗୃହ କାନନେ
କୁମାର ସହ ବିହାର ପଡ଼େ ବାମା ମନେ ।
ବିଭ୍ରମ ଉତ୍କଣ୍ଠାଭରେ ଉନ୍ମାଦିନୀ ପରି
ତୋଳେ ଫୁଲବିଜ କାନ୍ତେ ସଜାଇବ ପରି ।
କେତେ କୁସୁମେ ବର୍ଷିଲା ବର୍ଷି ଅଶ୍ରୁବିନ୍ଦୁ,
ନୀହାର ସୁହାର କିବା ଗୁନ୍ଥୁ ମୋତିବିନ୍ଦୁ ।
କି ଭାବିଲା, ପଥପାନେ ଚାହିଁ ବିଷାଦିନୀ
ଛୁଣ୍ଡାଇ ଫିଙ୍ଗିଲା ନୀଳନୀରଦ-ନୟନୀ ।.
ସମ୍ମୁଖେ ଦେଖିଲା କାନ୍ତ ଶ୍ରୀକରରୋପିତ
ଉଦ୍ୟାନୁ ଆନୀତ ବୃକ୍ଷଚୟ କୁସୁମିତ ।
ସମଦୁଃଖଭାଗିନୀ ଦୁଃଖିନୀ ସୂର୍ଯ୍ୟମୁଖୀ
ପାଶେ ପ୍ରବେଶି ସଧୀରେ କହେ ଶଶିମୁଖୀ—

"ବିଲମ୍ବିତ ଭାବ ତୋର କାହିଁକି ଲୋ ଧନୀ,
ଆସିବେ ପ୍ରାଣେଶ ତବ ପାହିଲେ ଯାମିନୀ ।
ମୁହିଁ ଲୋ ଚିରଦୁଃଖିନୀ ଚିରଅଭାଗିନୀ,
ପାସୋରି ଦେଲେଣି ମୋର ପ୍ରାଣସ୍ୱର୍ଗମଣି ।
କେଉଁ ରସବତୀ ରସସାଗରେ ମଜ୍ଜିଲେ,
ତେଣୁ ଅଜନ୍ମଦୁଃଖିନୀ ମନ୍ତୁ ଭୁଲିଗଲେ ।
କହି ଯାଇଥାନ୍ତି, ସେହି କଣ୍ଠ ଅନୁସରି
ଅସନ୍ତ ଲୋ ଦିନେ ଅନ ନ ହୁଏ ତାଙ୍କରି ।
ଅଜ୍ଞ କି ମନେ ବନ୍ଧୁର ଚରଣଜଡ଼ିତା
ଆଶ୍ରିତା ଲତାକୁ ପାଦେ କଲେ ବିଦଳିତା ।"
ବିଳାପେ ବିବଶା ବାମା ଭ୍ରମେ ଏକାକିନୀ,
ହୀତଭୟଶୂନ୍ୟମନା ଯେସନେ ଉନ୍ମାଦିନୀ ।
ସୁଧାକରକରେ ଝଳେ ପାଦପବଲ୍ଲରୀ,
ଝରଇ ତୁଷାରବିନ୍ଦୁ ଝରି ଝରି କରି ।
ସୁଗନ୍ଧବାହୀ ସମୀର ବହେ ଧୀରେ ଧୀରେ,
ସଜ କୁସୁମ ସୁବାସ ଲହରେ ପହଁରେ ।
ନୀରବ ରଜନୀ, ଚନ୍ଦ୍ର ହସନ୍ତି ନୀରବେ,
ମାଧ୍ୱାନନ୍ଦମଗ୍ନ ଜୀବେ ନିରେଙ୍ଗି କି ଭବେ ।
ସୁହାସିନୀ ଯାମିନୀର ନୂପୁରଝଙ୍କାର
ସମ ନିନାଦିତ ମାତ୍ର ଝିଙ୍କିଝଙ୍କାର ।
ଗଭୀର ବିଭାସେ ହସେ ଶୁଭ୍ର ବନରାଣୀ,
ଗଭୀର ବସନେ କିବା ସାଜି ତପସ୍ୱିନୀ,
ଯୋଗମଗ୍ନା ଯୋଗିନୀ ପରାଏ ଊର୍ଦ୍ଧ୍ୱମୁଖେ,
ଚାହିଁଛି ନୀରବେ କାନ୍ତେ ପ୍ରାଣଭରି ସୁଖେ ।

ସୁପ୍ତ ବୃଦ୍ଧ ପୁରଞ୍ଜୟ ଆପଣା କୁଟୀରେ
ଦୁହିତା ବିରହବ୍ୟଥା ନ ଜାଣନ୍ତି ଥରେ ।
ଭ୍ରମି ଭ୍ରମି ଜଣେ ଅସି ହେଲଣି ପାନ୍ଥାନ୍ତେ,
ପିତୃପଦପ୍ରାନ୍ତେ ଶ୍ରମେ ବସେ କୁନ୍ଦଦନ୍ତୀ ।
ଜନନୀହ୍ରା, ଶୋକେ ଲୋହିତ ନେତ୍ରଇନ୍ଦୀବର,
ସୁକୁମାରୀ ଅନନ୍ତୁ ବହଇ ସ୍ୱେଦନୀର ।
ନିଶାନ୍ତ ପବନ ଧୀରେ ଦୟାର୍ଦ୍ର ଚିତ୍ତରେ
ଚଞ୍ଚଳା କୁଞ୍ଚିତକେଶୀ ଦୁଃଖେ ଦୁଃଖିତରେ ।
ବନଲକ୍ଷ୍ମୀ ଅଞ୍ଚଳଗଳିତ ଶୀତବାତେ
ସୁତନ୍ୱୀ ତନୁରୁ ଶ୍ରମ ହରିଲା କଞ୍ଚିତେ ।
ତନ୍ଦ୍ରାବେଶେ ଚନ୍ଦ୍ରାନନୀ ମୁଦିଲା ନୟନ,
ଧରାରେ କନକକଙ୍କରୀ କରିଲା ଶୟନ ।
ସ୍ୱପନେ ଦେଖେ ଶୋଭାଙ୍ଗୀ ବୀରେନ୍ଦ୍ରକୁମାର
ସଙ୍ଗେ ବସିଅଛି ସ୍ୱର୍ଣ୍ଣସିଂହାସନପର ।
ଶ୍ୱେତ ରାଜପରିଚ୍ଛେଦ ଅବିର ବରାଙ୍ଗ
ମଣିମୟ ଭୂଷଣରେ ବିଭୂଷିତ ଅଙ୍ଗ ।
ଶ୍ୱେତ ଶତଦଳ ବୀରବକ୍ଷେ ଦୋଳାୟିତ,
ଅଭ୍ରମୟ ମଣି ମୁକୁଟେ ଶିର ଶୋଭିତ ।
କୁଙ୍କୁମ ଲେପିତା, ସୀମନ୍ତେ ସିନ୍ଦୂର ଚାରୁ,
ଚରଣେ ଅଲକ୍ତ, ପିନ୍ଧି ହରିତ ଅମ୍ବର,
ବସିଅଛି ବାମେ ତାର; ଶ୍ୱେତ ରାଜଛତ୍ର
ଟେକି ହୋଇଅଛି ନେତ୍ର କରେ ଝଲସିତ ।
କନକାଙ୍ଗୀ ଅଙ୍ଗନାଏ ଧବଳ ଚାମର
ଢାଳନ୍ତି, କରନ୍ତି ନୃତ୍ୟ ବାରନାରୀବର ।

ବୈଦିକ ବ୍ରାହ୍ମଣେ ପଢି ଶ୍ଳୋକ ସୁଗମ୍ଭୀର
ଢାଳନ୍ତି ଶିରେ କନକକୁମ୍ଭେ ମନ୍ତ୍ରନୀର ।
ଏମନ୍ତ ସମୟେ ସୁଖସ୍ୱପ୍ନ ଭାଙ୍ଗିଗଲା,
ଚମକଶବ୍ଦେ ଚାଇଁ ଉଠିଲା ବାଳିକା ।
ଦେଖିଲା ପ୍ରାଚୀ ତୋରଣ ହାସ୍ୟମୁଖୀ ଉଷା
ସୂର୍ଯ୍ୟ କରସ୍ପର୍ଶେ ମୁକ୍ତ କରିଲେ ସହସା ।
ମଳିନାନନ ଭାର୍ଗବ ନିକଟୁ ଯାମିନୀ
ଅବହେଳି ଚାଲିଗଲା, ସଙ୍ଗେ ନିଶାମଣି ।
ଉଷା ଆଗମ ଉତ୍ସବେ ଉପବନ ଅନ୍ତରେ
ବନେ ଶୁଭ ବାଦ୍ୟନାଦ ବାଜେ ନାନାସ୍ୱରେ ।
ବନରାଣୀ ବୀଣା କିବା ବିହଗ କାକଳି,
ମଧୁର ସଙ୍ଗୀତେ ପୂରିଗଲା ବନସ୍ଥଳୀ ।
ଆନନ୍ଦେ ଅଧର ଖୋଲି କଲା ଅମ୍ବୁଜିନୀ,
ଚୁମ୍ବନ ଆଣେ କି ନବୋଦିତ ଦିନମଣି ?
ପ୍ରଭାତ ପବନେ ଝରିଲା ଶେଫାଳି,
ସଙ୍ଗେ ଝରିଏ ରଜନୀଦତ୍ତ ହିମମାଳୀ ।
ଏକାଳେ କମଳାନନା ଦେଖିଲା ଅଦୂରେ,
ବେନି ନୀଳପକ୍ଷୀ ଉଡ଼ିଗଲେ ଶିରପରେ ।
ପୁଣି ପାଶେ ମୃଗଶିଶୁ ଦେଖା ଦେଲା ଆସି,
ବାତ୍ସଲ୍ୟସ୍ନେହେ ଉଠିଣ ବସିଲା ସୁକେଶୀ ।
ବିଷଣ୍ଣବଦନା ଦୀର୍ଘଶ୍ୱାସ ତେଜି ଧୀରେ
ପ୍ରାତଃକୃତ୍ୟ ଅର୍ଥେ ଗଲା ତଟିନୀର ତୀରେ ।
ଫେରି ଆସି ଦେଖେ ଫୁଲ୍ଲ ଅରବିନ୍ଦାନନୀ,
ପିତାପାଶେ ପ୍ରାଣେଶ୍ୱର, ବସିଛନ୍ତି ବେନି ।

କାଞ୍ଚିପୁରରେ ହେଉ ନୃପ ମୟୂରଶେଖର,
ତେଣୁ ଅସି ନ ଥିଲେ ଯେ ବୀରେନ୍ଦ୍ରକୁମାର ।
ପିତୃଶୋକେ ବିଷାଦ ଜଳଜ ଚନ୍ଦ୍ରାନନ
ଢାଙ୍କିଅଛି, ବୀରଙ୍କର ନମ୍ରିତ ଆନନ ।
ପିତୃବିୟୋଗରେ ପିତୃପ୍ରତିମ ନୃପଙ୍କୁ
ଅନୁନୟ କଲେ, କନ୍ୟା ସହ ନଗରକୁ
ଯିବାପାଇଁ, ମାତ୍ର ପ୍ରତିଜ୍ଞାସୂ ମହାମତି
ଆପଣେ ଯିବା ବିଷୟେ ବୋଇଲେ ଭାରତୀ—
"ନେଇ ପାର ବିଜଳୀରେ; ମାତ୍ର ସେ ମୋହର
ଏକମାତ୍ରର ସହାୟ ଜୀବନଦୁଃଖୀର ।
ବିହୁନେ ତାହାର ସେବା କରିବ କେ ମୋତେ ?
ଅନ୍ନ ଜଳ ନ ପାଇବି, ବଞ୍ଚିବି କେମନ୍ତେ ?
ଷର୍ବୀୟୁ ମୁଁ ପତ୍ତିଶ୍ରୟେ ରହି ନ ପାରିବି,
ଏମନ୍ତେ ଏକାନ୍ତେ ପଛେ ପରାଣ ତେଜିବି ।"
କହି ରହିଲେ ସଜନେ ବୃଦ୍ଧ ନରବର,
ଉତ୍ତରେ ବୋଇଲେ ବୀର ସୁମଧୁର ଗିର—
"ନ ଯାଇ ନଗରେ ଦେବ ! ରହନ୍ତୁ ଏଠାରେ,
ତବ ଆବାସଭବନ ରଚିବି ଅଚିରେ ।
ଦାସ ଦାସୀର ନିଯୋଗେ ରହନ୍ତୁ ଯତନେ,
ପ୍ରାଣପଣେ ସେବକେ ସେବିବେ ଶ୍ରୀଚରଣେ ।
ତବ ଯୋଗ୍ୟ ପୁରୀ ଏଥି ନିର୍ମାଣ କରିବି,
ଦୁହିତାଅଭାବଦୁଃଖ ମୋଚନ କରିବି ।
ଆଜଠୁଁ ସପ୍ତଦିବସେ ତନୟା ତୁମ୍ଭର
ରାଣୀପଦେ ଅଭିଷିକ୍ତ ହେବେ ରାଜପୁର ।"

ଯୁବାବାକ୍ୟେ ନରପତି ହେଲେ ସନମତ,
ପ୍ରାଣନନ୍ଦନୀର ଭାବୀ ସୁଖେ ଉଲ୍ଲସିତ ।
ପ୍ରେମସମ୍ଭାଷଣେ ତହୁଁ ଧରି ପ୍ରିୟାକର,
ନ ଆସିବା ଦୋଷ ମାଗିନେଲେ ବୀରବର ।
ବାମାଗଣ୍ଡେ ଦେଲେ ପ୍ରେମେ ବିଦାୟଚୁମ୍ବନ,
"ଯାଉଛି ଗୋ ଧୈର୍ଯ୍ୟ ଧରି ରହ ସପ୍ରଦନ ।
ମୋ ଶିରେ ନିବେଶି ପିତା ସାମ୍ରାଜ୍ୟର ଭାର
ଏ ଭବଧାମରୁ ହୋଇଅଛନ୍ତି ଅନ୍ତର ।
ଆସିବି ଗୋ ଯାଉଅଛି ହେ ପ୍ରାଣବାନ୍ଧବି ।
ତୁମ୍ଭଙ୍କୁ ମୁଁ ଛାଡ଼ି କାହିଁ ରହି କି ପାରିବି ?"
ଉତ୍ତରେ ଆତୁରେ ବାଳା ସଜଳନୟନା,
"କେମନ୍ତେ ବଞ୍ଚିବି ନାଥ ! କହ ତବ ବିନା ?
ବଞ୍ଚିତା ନ କର ମୋତେ ଦର୍ଶନସୁଖରୁ,
ନିତି ଦେଖୁଥିବି ଯେହ୍ନେ ତବ ମୁଖ ଚନ୍ଦ୍ରୁ ।
ମିନତି ଚରଣେ ମୋର; ଏ ଅଭାଗିନୀକି
ସ୍ମୃତିପଥୁ ନ ଭୁଲିବ ଦୟିତ ଏତିକି ।"
କରକରଦନା କର ଧରି କହେ ବୀର,
"ଆସିବି ଗୋ ଶଶିମୁଖୀ, ଚିନ୍ତା ପରିହର ।"
ଅଶ୍ରୁଧାରାଙ୍କିତ ଗଣ୍ଡେ ଚୁମ୍ବିଲେ ଚୁମ୍ବନ,
ପ୍ରଭାତନଳିନୀ କିବା ଚୁମ୍ବିଲା ଅରୁଣ ।
ଫେରିଲେ ସେଦିନ ବୀର ରାଜପୁରୀ ମୁଖେ,
ବିଷାଦିନୀ ରହିଲା ଦୁଃସହ ମନୋଦୁଃଖେ ।
ତହିଁ ଆର ଦିବସରୁ ରାଜଶିଳ୍ପିଚୟ
ନିର୍ମାଣିଲେ ନବ ପୁରୀ ଅତି ରମଣୀୟ ।

କ୍ରମେ ଦାସ ଦାସୀ ଆସି ରହିଲେ ସେ ପୁରେ,
ନବନୃପତି ଆଦେଶେ ସେବିଲେ ବୃନ୍ଦରେ ।
ପ୍ରତିଦୋଷେ ଦିନେ ସୁବେଶ ହୁଏ ଚନ୍ଦ୍ରାନନା,
ଝଳ ବହ୍ନି ଅନଳେ କନକବରନା ।
ଲମ୍ବିତ ନୀଳକୁନ୍ତଳ, ବିମୁକ୍ତ କବରୀ
ଚରମେ ଶାମଳେ ଛାନ୍ଦା ଏକ ପରଗୃହୀ ।
ଲକ୍ଷାରସେ ଶିରଷାଙ୍ଗୀ ପଯୂର ରଞ୍ଜିତ,
ଅରୁଣକିରଣ କୋକନଦେ କି ପତିତ ?
ରୁରୁ ପ୍ରପଦେ ରଜତ ମଞ୍ଜୁଳ ମଞ୍ଜୀର,
ଶୋଭେ କାଞ୍ଚି ନିତମ୍ବିନୀ ନିତମ୍ବେ ସୁନ୍ଦର ।
ଚମ୍ପାଗୋରୀ ରୁରୁ ଚମ୍ପାକଳୀ ଅଙ୍ଗୁଳିରେ
ମଣିମୟ ମୁଦ୍ରିକାର ଶୋଭା ବୃଦ୍ଧି କରେ ।
କରେ ମରକତଚୁଡ଼ୀ ମୃଣାଳନିନ୍ଦିତ,
ସୁଗୋଲ ବାହୁଲତାରେ ବାହୁଟି ଶୋଭିତ ।
କଣ୍ଠେ ମାଣିକ୍ୟ ଛାଟଙ୍କ ଉଜ୍ଜ୍ୱଳ ଦିଶଇ,
ଆନନେନ୍ଦୁ ପାଶେ ବେନି ତା'ରା କି ଶୋଭଇ ?
ଜବାଅଧରୀ ଅଧର ତାମ୍ବୁଳେ ରଞ୍ଜିତ,
ମଣି ନାସାମଣିରେ ନାସିକା ସୁଶୋଭିତ ।
ଖଞ୍ଜନଜିତ ନୟନେ ଅଞ୍ଜନର ରେଖା,
ଅର୍ଦ୍ଧେନ୍ଦୁଭାଲେ ସିନ୍ଦୁରବିନ୍ଦୁ ରୁରୁ ଲେଖା ।
ଶ୍ୟାମଳ କୁନ୍ତଳ ସହ ଲମ୍ବାଇଲା ବେଣୀ,
ଖେଳିଲା କି ରଙ୍ଗେ ପୃଷ୍ଠେ ଅହା କଳାଫଣୀ ।
ଝଞ୍ଜିଲା ଶିୟରେ ସିନ୍ଥି ରତନେ ଖଚିତ,
କାଦମ୍ବିନୀପରେ ଇନ୍ଦ୍ରଗୁମ୍ଫ କି ସ୍ଥକିତ ।

ପିନ୍ଧଲ ନୀଳ କାଞ୍ଚଲ ତାଙ୍କ କୁଚକଳୀ,
ନୀଳେନ୍ଦୀବରନୟନା ପିନ୍ଧେ ନୀଳ ଶାଢ଼ୀ ।
ସୁବେଶ ଅନ୍ତେ ଶୋଭାଙ୍ଗୀ ପିତାପାଶେ ମିଳି
ସଭକ୍ତି ଅନ୍ତରେ ପଦେ କଲା କୃତାଞ୍ଜଳି ।
ନଗେନ୍ଦ୍ରପଦ୍ମରେ କିବା ନଗେନ୍ଦ୍ରନନ୍ଦନୀ
ପାର୍ବତୀ ମାଗେ ବିଦାୟ ଈଶ୍ୱର ଶୂଳପାଣି ।
ତୋଳିଲେ ତନ୍ତ୍ରୁ ତନୁଜା ସ୍ନେହେ ପୃଥ୍ୱୀଞ୍ଜୟ,
ବସାଇଲେ କୋଳେ, ହୃଦ ହୋଇଲା ଅଥୟ ।
ପାରାବାରବକ୍ଷ ଯଥା ଅକୂଳ ଅଥଳ,
ପିତୃସ୍ନେହ ଅହା ଯାହା ଜଗତେ ଅତୁଳ ।
ଦରଅଶ୍ରୁବାରିଧାର ବହେ ଘନଘନ,
ଗିରିରାଜନେତ୍ରୁ କିବା ଉଷ୍ଣପ୍ରସ୍ରବଣ ।
ପିତୃଶୋକେ ମାତୃହୀନହୃଦ ବିକଳାର
ବିଚ୍ଛେଦବ୍ୟାକୁଳେ ହେଲା ଦ୍ୱିଗୁଣେ କାତର ।
ଅଞ୍ଚଳ ତନୟାମୁଖ ପୋଛି ଅଶ୍ରୁବାରି
ଶିର ଆଘ୍ରାଣିଲେ ସ୍ନେହଭରେ ଦଣ୍ଡଧାରୀ ।
ଗୋଟି ଗୋଟି କୋଟି ନୀତି ଉପଦେଶମାନ
କହି ପ୍ରବୋଧିଲେ ପ୍ରାଣନନ୍ଦନୀର ମନ ।
ପିତୃପଦଧୂଳି ଘେନି ପଙ୍କଜନୟନା,
ବିଦାୟ ନେଲା ବିଷାଦପୂର୍ଣ୍ଣମନେ ଧନୀ ।
ଆଦରେ ପାଳିତ ମୃଗ ମୟୂର ମୟୂରୀ,
ପାରାବତ ଆଦ ଯେତେ କ୍ରୀଡ଼ାସହଚରୀ,
ଗଜଗମନା ଗମନ ଜାଣି ତାର ପାଶେ,
ଅଶ୍ରୁପୂର୍ଣ୍ଣ ନୟନେ ବେଢ଼ିଲେ ଚଉପାଶେ ।

ସ୍ନେହେ ସମ୍ଭାଷି ତାହାଙ୍କୁ ସୁଧାଂଶୁବଦନୀ
ପଶିଲା କୁଞ୍ଜରକୁଞ୍ଜେ କୁଞ୍ଜରଗାମିନୀ ।
ସ୍ୱକରେ ପାଳିତ ଯେତେ ତରୁଲତାମାନ,
କରେ ଅଉଁଶି ବିଦାୟ ମାଗିଲା ବହନ ।
ପୁଷ୍ପଛଳେ ଅଶ୍ରୁଜଳ ପାଦପେ ମୁଞ୍ଚିଲେ,
ବାତେ ଦୋଳାୟିତା ଲତା ବିଷାଦେ କମ୍ପିଲେ ।
ଶୁଭାଶିଷ କିବା ଶୁଭ୍ର କୁସୁମ ବର୍ଷଣ
କରି ବିଦାୟିଲେ ବାମା ତରୁଲତାଗଣ ।
ତହୁଁ ଆସି ତରଳାକ୍ଷୀ 'ତରଙ୍ଗିଣୀ' ନାମା
ଦାସୀକି ବିରସେ କହେ ବିଷାଦବଦନା,
"ଯାଉଛି ଲୋ ପିତାଶନ୍ତ୍ରା ଲାଗି ଲଠି ତୋତେ,
ଜନନୀ ସମାନ ସିନା ମଣିଥାଏ ଚିତ୍ତେ ?
ପ୍ରାଣପଣେ ସେବିଥିବୁ ପଦ ପିତାଙ୍କର,
ମୋ ବିନେ ନୋହିବ ଯେତେହେଁ ଦୁଃଖ ତାହାଙ୍କର ।"
ସକଳେ ମଧୁରେ କହି ମଧୁରଭାଷିଣୀ
ମେଲାଣି ନେଲେ ସଜଳନେତ୍ରେ ଏଣୀକ୍ଷୀ ।
ସ୍ୱର୍ଣ୍ଣଖଚିତ ଶିବିକା ଥିଲା ସୁସଜ୍ଜିତ,
ବସିଲା ରମ୍ଭୋରୁ ତହିଁ ସଖୀସମାବୃତ ।
ବହିଲେ ବାହକେ, ରାଜମାର୍ଗେ ରାଜପୁରେ
ଯାଆନ୍ତେ ବୁଡ଼ିଲା ବନ ଶୋକ ଅନ୍ଧକାରେ ।
କାନନଶିରୀ କି ସତେ ହେଲା ଅପସୃତ,
ବନଦେବୀ ବିଜଳୀର ବିଚ୍ଛେଦେ ବ୍ୟଥିତ ।
ରାଜପୁର ଫୁଲ୍ଲସରେ ପ୍ରଫୁଲ୍ଲନଳିନୀ
ପରାଏ ଫୁଟିଲା ନବବଧୂ-କମଳିନୀ ।

ମାଳବନନ୍ଦନୀ ସଙ୍ଗେ ବୀରେନ୍ଦ୍ରକୁମାର
ରାଜ୍ୟଅଭିଷେକ ଯେବେ ହେଲେ ରାଜପୁର,
ଉତ୍ସବ-ଆନନ୍ଦେ ହସି ଉଠିଲା ନଗରୀ,
ହରଷେ ଉନ୍ମତ୍ତ ଅହା ପୁର ନରନାରୀ ।
ହରପୁରକାଶେ ବୀର ନବ ଘନମଣି,
ନବରାଣୀ ଶୋଭାରାଣୀ ନବୀନା ନଳିନୀ ।
ଏ ଯୁଗଳ ମିଳନର ଆନନ୍ଦ-ତରଙ୍ଗେ
ଭାସିଲେ ପ୍ରଜାଏ ଜୟଗୀତ ଗାଇ ରଙ୍ଗେ ।
ସୁଶାସନେ ସୁପାଳିତ ହେଲେ ପ୍ରଜାଗଣ,
ରାମରାଜ୍ୟେ ଶାସିତ କି ଅଯୋଧ୍ୟା ଭୁବନ ।
ମୃତପ୍ରାଣା ପ୍ରେମମୟୀ ବାଳା ମହିଷୀ
ବୀରେନ୍ଦ୍ରକୁମାର ହୃଦ-ଗଗନର ଶଶୀ
ରୂପଜ୍ୟୋତ୍ସ୍ନାରେ ପ୍ଲାବିଲା ଯଥା ରାଜପୁର,
ଯଶାଲୋକେ ବିମଣ୍ଡିଲା ତଥା ହରପୁର ।
ପରସ୍ପର ପ୍ରେମାର୍ଣ୍ଣବେ ଦେ ରାଜଦମ୍ପତି
ବୁଡ଼ିଥିଲେ ନିତ ନବ ଅନୁରାଗେ ମାତି ।
କେବେ ପ୍ରିୟାସଙ୍ଗେ ନୃପ ପ୍ରମୋଦ ଉଦ୍ୟାନେ
କରନ୍ତି ଭ୍ରମଣ ସୁଖେ ହରଷିତ ମନେ ।
କେବେ କାନ୍ତ ସଙ୍ଗେ ଯାଏ କୁରଙ୍ଗନୟନା
ପିତୃ ଦରଶନେ ଅହା ଉଲ୍ଲସିତମନା ।
ଜବାଲୀକୂଳ ମଞ୍ଜୁଳ ପରିଚିତ ବନ
ଜନକ ଆବାସ ଯହିଁ, କରଇ ଗମନ ।
ପ୍ରାଣକାନ୍ତ କର ଧରି ଖଞ୍ଜନନୟନୀ
କରଇ ବିହାର ପୂର୍ବସ୍ମୃତି ମନେ ଘେନି ।

ବନ୍ଧୁ କଞ୍ଚୁଦନ ତାହାଂ ଫେରନ୍ତି ନଗରେ,
ଯାଉଥାଏ ଦିନ କଟି ପରାଣ ପ୍ରେମରେ ।
କ୍ରମେ କଞ୍ଚୁଦନ ଅନ୍ତେ ଗର୍ଭେ ବିଜଳୀର
ଜନମ ଲଭିଲା ନବ କୁମର ସୁନ୍ଦର ।
ସୁକୁମାର ଅମଳ କମଳକଳୀ ସମ
ଶିଶୁର ମୁରତି ଅହା ନୟନାଭିରାମ ।
ସର୍ବ ସୁଲକ୍ଷଣଯୁକ୍ତ ଶରୀର ଶିଶୁର
ଦେଖି ରଖିଥିଲେ ନାମ ଲକ୍ଷଣକୁମାର ।
ପୁର ନରନାରୀ ସର୍ବେ ହେଲେ ଆନନ୍ଦିତ,
ନବ ଆଶା ଜଗାଇ ହେ ଜନନୀ ଜଲ୍ଲସିତ ।
ଶତଧାତ୍ରୀର ଜତନେ ପାଳିତ ଆଦରେ
ହେଉଥିଲା ବୁଢ଼ୀ ପିତାମହୀଙ୍କ କୋଡ଼ରେ ।
କ୍ରମେ କ୍ରମେ ଶୁକ୍ଳପକ୍ଷ ଶଶଧରସମ
ବଢ଼ିଲା କୁମରମଣି ରୂପେ ଅନୁପମ ।

---

## ଚତୁର୍ଥ ସର୍ଗ

ମଧୁର ଯେ ମଧୁମାସ ମୃଦୁଳ ମଧୁର,
ଦକ୍ଷିଣା ଅନିଳ ବହିଯାଏ ଧୀର ଧୀର ।
ପଢ଼ୁଥାନ୍ତି ପିଞ୍ଜରାରେ ଶୁକ ସାରୀ ବେନି,
"ଜୟ ରାଜା" କହେ ଶୁକ, ସାରୀ "ଜୟ ରାଣୀ" ।
ବସିଥାଏ ବିଷାଦିନୀ କାଷ୍ଠାସନ ପରେ,
ନ ଦେଖେ ନୟନେ ବାମା ନ ଶୁଣେ କର୍ଣ୍ଣରେ ।

ସନ୍ଦେବ୍ୟତରେ ସୁଗୁରୁ ସରୋଜ ମୁଖ ଚଣି
ବସିଛି ବାଳଳା ପର୍ବ-ଶର୍ବ-ଶଶାଙ୍କ-ମୁଖୀ ।
ଚାନ୍ତିତ ଅନ୍ତରେ ଶନ୍ତ୍ରାଧନେ ଚନ୍ଦ୍ରାନନ
ଢାଙ୍କିଛି, ଗାମ୍ଭୀର୍ଯ୍ୟ ଭାବ ଭରା ଅନୁପମ ।
ସହସା ସହାସମୁଖେ ପ୍ରାଣେଶ ତାହାର
ହେଲେ ପରବେଶ, ମୃଗୟାବେଶେ ଯୁବାର
ସୁସଜ୍ଜିତ ବରବପୁ, ଶିରେ ଶିରସ୍ତ୍ରାଣ,
ଝଲସିତ ହୁଏ କଟିଲମ୍ବିତ କୃପାଣ ।
ଗୃହ ରାଜାଙ୍କ ଚନ୍ଦ୍ରମା ଆନନ୍ଦ ବାଳାର
ବିଷାଦଘନ ନିମେଷେ ହୋଇଗଲା ଦୂର ।
ମଧୁର ହାସର ଜ୍ୟୋତ୍ସ୍ନା ମଧାର ଅଧରେ
ଭାସିଉଠିଲା, ସଭ୍ରମେ ଉଭା ହେଲା ଧୀରେ ।
କାନ୍ତ-କର-କୋକନଦେ ଧରି ବୀରମଣି
ବୋଇଲେ ମଧୁରେ, "ପ୍ରିୟେ ! ଦିଅ ଗୋ ମେଲାଣି,
ମୃଗୟାକୁ ଯାଉଅଛି ଦୂର ବନଘୋଟରେ,
ଫେରି ଆସିବି ପ୍ରେୟସି, ଆଜ ପ୍ରଦୋଷରେ ।"
ସଜସରୋଜବଦନୀ ସ୍ୱାମୀ ବାଣୀ ଶୁଣି
ପଡ଼ିଲା ମଲିନ ପଦେ କହେ ଧନୀ,
"ନାହିଁ ପ୍ରାଣେଶ୍ୱର ! ପଡ଼ୁଅଛି ଶ୍ରୀଚରଣେ,
ଛାଡ଼ି ନ ଦେବି ଯିବାକୁ କଦାପି କାନନେ ।
ଦୁଃସ୍ୱପ୍ନ ଦେଖି ଯେ ପ୍ରାଣ ହୁଏ ବିକମ୍ପିତ,
ମହାବାତେ ରମ୍ଭାପତ୍ର ଥରଇ ଯେସନ୍ତ ।
ଅକାରଣେ ଅଶ୍ରୁଜଳ ଝରଇ ନୟନେ,
ସେ ସ୍ୱପ୍ନ ସତ୍ୟ ଭାବି ଉଠେ ପୋଡ଼ାପ୍ରାଣେ ।

ଯିବ ଯଦି ଏ କୃପାଣେ ହାଣି ଦାମିଣିରେ
ମୃତଶବ ଲଙ୍ଘି ତାର ଯାଅ ହରଷରେ ।”
ଧରି ବକ୍ଷେ ପ୍ରେମଲତା କରି ଆଲିଙ୍ଗନ
ସ୍ମିତ ସୁଧାବାକ୍ୟେ ବୀର ବୋଇଲେ ଏସନ,
“ଏ କି ପ୍ରାଣେଶ୍ୱରି ! ଏକି ତବ କାତରତା ?
ଦେଖ ବୃଥା ଶଙ୍କା ସତୀ, କ୍ଷୁଦ୍ର ଦୁର୍ବଳତା !
ଯାଉଅଛୁ ଲେଉଟି ଗୋ ଆସିବ ଏକ୍ଷଣି,
ସାମାନ୍ୟ ସ୍ୱପନେ ଚିନ୍ତା କର ସୁଲକ୍ଷଣୀ !
ହାତମୁଠାରେ କି ବାତ ରହେ ସୁକୁମାରି !
ସ୍ୱପନବଚନ ସତ୍ୟ ମଣୁଛ ସୁନ୍ଦରୀ !
ଅଳୀକ ଆଶଙ୍କା ମନୁ ତେଜ ସମାଦର,
ହେଲେଣି ସର୍ବେ ସଜ୍ଜିତ ହେଉଛୁ ଉଚ୍ଛୁର ।”
ଚାହିଁଅଛି ଚନ୍ଦ୍ରାନନୀ ସଜଳ ନୟନ,
ଚନ୍ଦ୍ର ମହୋଦଧିର କି ଶେଷ ଦରଶନ
ପୂର୍ଣ୍ଣିମା ପ୍ରଭାତେ; ପ୍ରେମପ୍ରତିମା ଆନନ
ଚୁମ୍ବିଲ ପ୍ରଣୟଭରି ଅଧର ଚୁମ୍ବନ ।
ଭାବି ବିରହବିହ୍ୱଳା ବିକଚ ନଳିନୀ
ଚୁମ୍ବିଲ କି ଅହା ! ଅସ୍ତଗାମୀ ଦିନମଣି ?
ବିଦ୍ୟୁତ ବେଗେ ବିଦ୍ୟୁତବରନାରି କରି
କ୍ଷଣେ ‘ଯାଉଛି’ କହି ହୋଇଲେ ଅନ୍ତର ।
ଚାହିଁ ରହିଅଛି ଶୂନ୍ୟେ ଆୟତଲୋଚନା,
ବଜ୍ରାହତା କିବା ନବ କୁସୁମପ୍ରତିମା ।
ଅନିଚ୍ଛା ଝଙ୍କାରେ ଅମଙ୍ଗଳ ଅଶ୍ରୁନୀର
ନୀଳାବ୍ଜ-ନୟନୁ ଝରିପଡ଼ଇ ବାମାର !

କାନ୍ତ ବିନା ନବୀନାର ମନ ଛନ ଛନ,
ବିଷ ସମାନ ମଣିଲା ଅଶନ ଭୂଷଣ ।
ଘର ବାହାର ବିହାର ନ ରୁଚଇ କନ୍ଥି,
ସଙ୍ଗିନୀଙ୍କୁ କହେ ଡାକ ନେଇ ନୀର ମୁଞ୍ଚି,
"କହ ପ୍ରିୟସଖୀ ଆଜ କି ହେଲା ମୋହର,
ଅକାରଣେ ପ୍ରାଣ କମ୍ପା ହୁଏ ଲୋ କାତର ?
ଅହେତୁକୀ ଆଶଙ୍କାରେ ଆକୁଳ ମୋ ମନ,
କିବା ଅମଙ୍ଗଳ ଦୃଶ୍ୟ ମାନସ ନୟନ
ଭାସିଉଠେ ଲୋ ସଜନୀ, ବାଜଇ କର୍ଣ୍ଣରେ
ଅମଙ୍ଗଳ ଧ୍ୱନି, ଯେହ୍ନେ ଶୁଭଇ ଅଦୂରେ ।
ତୃଷାତୁର ପଥିକର ତାପିତ ପରାଣେ
ଉତ୍ତପ୍ତ ମରୁର ତପ୍ତ ନିଶ୍ୱାସ ଯେସନେ ।
ରହି ରହି କାନ୍ଦଉଠେ ଏ ପୋଡ଼ା ପରାଣ,
ଅନିଚ୍ଛାରେ ବହେ ଅଶ୍ରୁ ନଲେହେଁ ବାରଣ ।
ସଦା ମୃଗୟାରସିକ ପ୍ରଭୁ ଅଭାଗୀର,
ଶତ ଶତ ବାର ଯାଇଥାନ୍ତି ବନଘୋର ।
ନ ହୁଏ ତ ଦିନେ ମନ ଅସ୍ଥିର ଏମନ୍ତ,
କହ କିପାଇଁ ଲୋ ଆଜ ଏ କି ବିପରୀତ ?
ସାନ୍ତ୍ୱନା ବଚନେ ସଖୀ ବୁଝାଇଲେ ଯେତେ,
ଅସ୍ଥିରପ୍ରାଣା ସୁନ୍ଦରୀ ନ ବୁଝେ କେଉଁମତେ ।
ହୁଏ ଛଟପଟ ଅହା ପତିସଙ୍ଗ ବିନା
ବନକପୋତିନୀ ଯଥା, ବ୍ୟାକୁଳା ନବୀନା ।
ଶେଷେ ବନପୂର୍ଣ୍ଣ ନେତ୍ରେ କହେ ଜବାଧରୀ,
" ଗୃହ ଲୋ ସଙ୍ଗିନୀ, ଆଜ ଯିବି ଅନୁସରି

ପତି ଅଗମନ ପଥେ ପିତାଙ୍କ ଭବନ,
ସଜାଅ ଶିବିକା ସଖୀ ଯିବି ଲେ ବହନ ।”
ସାଜିଲେ ସଖୀଏ ତ୍ୱରି ଶିବିକା ସମ୍ଭାରେ,
ବାହାରିଲା ବନଜବଦନା ଧାଡିକାରେ ।
ପରିଣୀପୁତ୍ତଳି ପୁନ ଲକ୍ଷଣକ୍ରମରେ
ସନ୍ତାପିତପ୍ରାଣେ ବାଳା ଧରିଲା କୋଳରେ ।
ପତିପଦ ଅନୁସରି ଯାଏ ବିଷାଦିନୀ,
କାମଦେବ ପାଇଁ କିବା କନ୍ଦର୍ପକାମିନୀ ।

× × ×

ଏଣେ ମହା ଉତ୍ସାହିତପ୍ରାଣେ ନୃପବର
ସଗହଣେ ମୃଗୟାରେ ଗଲେ ଦର୍ପଭର ।
ପ୍ରଥମ ଶିକାରେ ଚଣ ବିଚିତ୍ରାଙ୍ଗ ପକ୍ଷୀ
ଦେଖି ଆମଞ୍ଚିଲେ ଧନୁ ତୀକ୍ଷ୍ଣଶର ଯୋଖି ।
ଭ୍ରଷ୍ଟ ହେଲା ଲକ୍ଷ୍ୟ, ଅହା କପୋତମିଥୁନ
ଅନ୍ୟ ଡାଳେ, ପଡ଼ିଲା ହା ସେ ତୀକ୍ଷ୍ଣ ମାର୍ଗଣ
କପୋତନୀ ବକ୍ଷେ, ତଳେ ପଡ଼ିଲା ତକ୍ଷଣେ
ମୃତ୍ୟୁଯନ୍ତ୍ରଣାରେ କରି କାରୁଣ ନିଃସ୍ୱନ ।
କପୋତୀ ପତନେ ମହାଦୁଃଖେ ସେ କପୋତ
ପ୍ରାଣଭୟ ତେଜି ଅତି ଶୋକବିହ୍ୱଳିତ ।
ଉଡ଼ିଆସି ଭୂତଳେ ବସିଲା ତାର ପାଶେ,
ସକରୁଣ ସ୍ୱରେ ରାବି ବୁଲେ ଚଉପାଶେ ।
ଶରାଘାତେ କଲବଲ କପୋତୀ ହୁଅଇ,
ଚଞ୍ଚୁରେ ଚଞ୍ଚୁକୁ ଧରି କପୋତ ରାବଇ ।

ଏ କରୁଣ ଦୃଶ୍ୟ ଦେଖି କରୁଣହୃଦୟ
ବୀରେନ୍ଦ୍ରକୁମାର ହେଲେ ବିଷାଦେ ଅଥୟ ।
କରୁ ଧନୁ ପକାଇ କପୋତ ପାଶେ ମିଳି
ରୁଧିରକ୍ତ ତନୁ ତାର କୋଳେ ନେଲେ ତୋଳି ।
ଧୀରେ ଧୀରେ ତୀରଫଳା କରନ୍ତେ ବାହାର,
ଅସ୍ଫୁଟ କାତର ସ୍ୱନ ସହିତେ ତାହାର
ପ୍ରାଣବାୟୁ ଗଲା ଛାଡ଼ି; ଦେଖି ବୀରମଣି
ବିରସମନେ ଶବକୁ ଥୋଇଲେ ଅବନୀ ।
ପ୍ରିୟାର ମରଣ ଯହୁଁ କପୋତ ଜାଣିଲା,
ଭୟ ତେଜି ବୀରବର-ଶୀର୍ଷରେ ବସିଲା ।
ମୁଖେ ଚାହିଁ ଆର୍ତ୍ତନାଦେ କରଇ ରୋଦନ,
ତା ବିକଳ ଚାହିଁ ସର୍ବେ ସଜଳ ନୟନ ।
କରେ ଅଶ୍ରୁସିକ୍ତ ଦୁଃଖେ ଛାଡ଼ିଦେଲେ ବୀର,
ଲେଉଟି ରହିଲା ପୁଣି କପୋତୀପାଶର ।
ବିଷାଦ ଅନ୍ତରେ ବୀର ହେଲେ ଅଗ୍ରସର,
ମହାଘୋରବନମୁଖେ ଘେନି ଅନୁଚର ।
ଅନେକ ଜନ୍ତୁ ମାରିଲେ ଖର ଶରଘାତେ,
ହରଷଚିତ୍ତ ଉତ୍ସାହ ଅସିଲା କଣ୍ଠତେ ।
ଦିବା ଅବସାନ ହେବା ପୂର୍ବରୁ ନୃମଣି
ଫେରିଲେ କାନନୁ ଘେନି ମୃତ ଜନ୍ତୁଶ୍ରେଣୀ ।
ଜର୍ଗାଳି କୁଟିଲେ ମାଳବ ନରପତିଙ୍କର
ଭବନେ ହେଲେ ପ୍ରବେଶ ବୀରେନ୍ଦ୍ରକୁମାର ।
ତଟିନୀ ଶୀକର-ଶୀତ ସ୍ନିଗ୍ଧ ସମୀରଣ
ବିଞ୍ଚି ଅବସାଦ, କ୍ଳାନ୍ତି କଲା ହରଣ ।

ପାନ ଭୋଜନାନ୍ଦ ସାର ପ୍ରଫୁଲ୍ଲ ଆନନେ
ପ୍ରିୟାକରବେପିତ କୁସୁମିତ ଉଦ୍ୟାନେ
କରନ୍ତି ଭ୍ରମଣ ବୀର, ପ୍ରତି ପୁଷ୍ପେ ପଦେ
ଅତୀତ ମଧୁର ସ୍ମୃତି ଭସିଯାଏ ନେନେ ।
ନିଦ୍ରାଭଙ୍ଗେ ମନେ ପଡ଼େ ସ୍ୱପନ କାହାଣୀ,
ଗୋଟି ଗୋଟି ସ୍ୱପ୍ନଦୃଶ୍ୟ ତଥା ବୀରମଣି
ଭାଳନ୍ତି ହର୍ଷ ବିସ୍ମୟେ, ପଡ଼ିଲା ନୟନେ
ମାଧବୀ ମଣ୍ଡପ, ପୁଣି ପଡ଼ିଗଲା ମନେ—
"ଦିନେ ଲଳିତାଙ୍ଗୀ ଏହି ଲତା ଅନ୍ତରାଳେ
ଲୁଚିଥିଲା, ଖୋଜି ନ ପାଇ କହିଲି ଛଳେ
'କାହିଁ ଅଛ ପ୍ରାଣପ୍ରିୟେ ବେଗେ ଧାଇଁ ଅସ,
ଭୀଷଣକାୟ ଉରଗ କଲା ମୋତେ ଗ୍ରାସ'
ଏହା ଶୁଣି କାଛରେ ସେ ଅସିଲା ବାହାର,
ଦେଖି ମୋ ବଚନ ମିଥ୍ୟା ବୋଇଲା ଚତୁରା,
'ତବ ବାକ୍ୟେ ପ୍ରାଣନାଥ ଶରୀରଶୋଣିତ
ହେଲା ଦାସୀର ଶୀତଳ, ପ୍ରାଣ ବିକମ୍ପିତ ।
ଏମନ୍ତ ଦାରୁଣ ବାଣୀ ଦିନେ ନ କହିବ,
ଶୁଣିଲେ ଅଭାଗୀ ନିଶ୍ଚେ ପରାଣ ତେଜିବ ।
ପ୍ରେମିକା ମରଣ କୁସୁମରୁ ସୁକୁମାର,
କୁଳିଶୁ କଠିନ ପୁଣି ପ୍ରେମିକା ଅନ୍ତର,
ଜୀବନେ ମରଣେ ଭିନ୍ନ ନ କରଇ ପ୍ରୀତି,
ପ୍ରାଣରୁ ଅଧିକ ପ୍ରେମ, ଜାଣେ ସତୀମତି ।'
କହିବ ଆଜ ପରୀକ୍ଷା ଅନ୍ତର ତାହାର,
ମୋ ବଚନ ଶୁଣି କି କହିବ ସମାଚାର ।"

ଏମନ୍ତ ବରୁଚି ଶତେ ବୀରେନ୍ଦ୍ର ମଙ୍ଗଳ
ଶସ୍ତ୍ର ଭୃତ୍ୟଙ୍କୁ ପାଶେ ଆଣିଲେ ହକାରି ।
ବୋଇଲେ "ରେ ଯାଅ, ଯହିଁ 'ଛନ୍ତି ମହାରାଣୀ,
ଥିବେ ଏକାନ୍ତେ ଅଲକ୍ଷ୍ୟ, ନ ଥିବେ ଜନନୀ ।
କହିବୁ ବସନ୍ତ ମୁଖେ ଗଦଗଦ ସ୍ୱରେ,
'କି କହିବି ଦେବି ! କଥା ନ ଆସେ ତୁଣ୍ଡରେ ।
ଶିକାରୁ ଫେରି ନୃପତି ଉଦ୍ୟାନ ପୁଷ୍ପବନେ
ଭ୍ରମୁଥିଲେ, ସର୍ପ ଏକ ଆସି ଶ୍ରୀଚରଣେ
ଦେଲା ଦଂଶି, ଗତପ୍ରାଣ ହେଲେ ମହାରାଜ ।
ଶୋକଜଳେ ବୁଡ଼ିଲା ମା ହରିପୁର ଆଜ !'
ଯେବେ ପୁଛିଲେ ମହିଷୀ ଏମନ୍ତ କହିବୁ,
ଆସିବାକୁ ଇଚ୍ଛା କଲେ ନାହିଁ ନ କରିବୁ ।
ଶୋକ କଲେ ସଙ୍ଗେ ତୁହି କରିବୁ ରୋଦନ,
ଯାଅ ବେଗେ ଗଳମ୍ବରେ ନାହିଁ ପ୍ରୟୋଜନ ।"
ନୃପବାକ୍ୟେ ଅନୁଚର କର୍ଣ୍ଣେ ଦେଲା କର,
ବୋଇଲା ସଭୟେ, "ଦେବ ! ଏ ଆଜ୍ଞା ଶ୍ରୀମୁଖର
ପାଳି ନ ପାରିବ ଦାସ କଦାପି ପ୍ରାଣାନ୍ତେ,
ଏ ନିଷ୍ଠୁର ବାଣୀ ପ୍ରଭୁ, କହିବ କେମନ୍ତେ
ମହାରାଣୀ ଶ୍ରୀମୁଖରେ ? ଏ ମିଥ୍ୟା ବଚନ
ନ ଆସିବ ଦାସତୁଣ୍ଡେ ! କ୍ଷମ ଅକିଞ୍ଚନ ।"
ଅଭୟେ ଆଶ୍ୱାସି ବୀର ବୋଇଲେ ମଧୁର,
"ମୋ ଆଜ୍ଞାରେ ଯାଅ, ଦୋଷ ନାହିଁ ତୋହରର ।
ରାଜାଜ୍ଞା ଅବଜ୍ଞା ଦୋଷେ ହେବୁ ଦଣ୍ଡନୀୟ,
ଦୋଷାଦୋଷ ମୋର, ତୋର ନାହିଁ କିଛି ଭୟ ।"

ସଖଙ୍କ ଚତ୍ତରେ ଭୃତ୍ୟ ମଗିଲ ମେଲାଣି,
ମୂର୍ଚ୍ଛିଲେ ଭୂତଳେ ଶୋଇଲେ ଯୁବାମଣି ।
ମିଥ୍ୟାବାକ୍ୟଭରଭରେ ବଦନ ଭୃତ୍ୟର
ଶୁଖିଅଛୁ, ଭୟେ ସ୍ୱେଦ ବହେ ଝର୍‌ଝର ।
ବାହାର ଅଛୁ ବାଙ୍ଗୀ ଜନକଭବନେ,
ପ୍ରବେଶିଲ ବାର୍ତ୍ତାବହ ତାର ସନ୍ନିଧାନେ ।
ଚରଣେ ପ୍ରଣମି ଭୟଚକିତ ବଚନ
ନୃପତି ଅଦେଶମାନ କରିଲ ବର୍ଣ୍ଣନ ।
ଶୁଣି ରାଣୀ ଶିରେ କିବା ବଜ୍ରପାତ ମଣି
"ଅହା ନାଥ !" ବୋଲି ଟଳିପଡ଼ିଲେ ଅବନୀ ।
ଧାଇଁ ଆସି ସଖୀଶ୍ରେଣୀ ମୁଖେ ନୀର ଛିଞ୍ଚି
ନାଶା କର୍ଣ୍ଣ ଫୁଙ୍କି ବହୁ ବ୍ୟଜନରେ ବିଞ୍ଚି
କେତେକ୍ଷଣେ ଚେତା କରାଇଲେ ସେ ସୁନ୍ଦରୀ,
ଘନ ଘନ ବହେ ରମ୍ୟ ନୟନରୁ ବାରି ।
ଶିରେ କର ମାରି କାନ୍ଦି କହଇ ବାଳିକେ,
"ଅହା ରେ ବିଧାତା ଏହା ଥିଲା ମୋ କପାଳେ ?
ଅହା ପ୍ରାଣେଶ୍ୱର ! ମୋର ଦେଖି କେଉଁ ଦୋଷ
ଗଲ ଛାଡ଼ି ଅଭାଗୀରେ କରିଣ ନିରାଶ ?
ଯେବେ ବାନ୍ଧିଲ ଦାସୀ ବୋଲି ନ ମାନିଲ,
କି କାରଣେ ପ୍ରାଣନାଥ, ଅକରୁଣ ହେଲ ?
ନ ଜାଣି କି ପ୍ରଭୁ ! ପଦସେବିକାର ମନ ?
ପ୍ରାଣପକ୍ଷୀ ନୀଡ଼ ଛାଡ଼ି କରିବ ପ୍ରୟାଣ ।
ଅସ୍ତ ହେଲେ ଦିନମଣି ଦିବା କି ରହଇ ?
ଅସ୍ତ ହେଲେ ଶଶଧର ଜ୍ୟୋତ୍ସ୍ନାକୁ ନ ଥାଇ ।

'ଉପୁଡ଼ିଲେ ତରୁ ଛାୟା ରହଇ କି ଅଉ ?
ଭାଙ୍ଗିଗଲେ ଦୀପ ଶିଖା ନିଭେ ଗୃହୁଁ ଗୃହୁଁ ।
ଶୁଷ୍କ ସରୋବରେ ପ୍ରଭୁ, ବଞ୍ଚେ କି ନଳିନୀ ?
ଦାସୀପ୍ରାଣ ଯାଇଅଛି ତବ ସଙ୍ଗେ ଘେନି ।
ନିଜ କର କରବାଳେ ନାଶିଥାନ୍ତ ଯେବେ,
"ସୁଭଗିନୀ" ବୋଲି ଗର୍ବ କରିଥାନ୍ତି ତେବେ ।
ଦାରୁଣ ବିଧାତା ମୋର ସେ ଆଶା ନାଶିଲା,
ପରାଣି-ତ ରଣି ତଟି ବୁଡ଼ାଇଣି ଦେଲା ।
ଏତିକି ଦୁଃଖ, ଅଉ ସେ ମଧୁର ବଚନ
ଶୁଣିଲି ନାହିଁ ଅନ୍ତିମେ ଅଭାଗୀ ଶ୍ରବଣ ।
ନ ଦେଖିଲି ଦଗ୍ଧନେତ୍ରେ ସେ ସୌମ୍ୟ ଆନନ,
କାହିଁ ଲୁଚିଲ ହେ ନାଥ, ଦିଅ ଦରଶନ ।
ତଳେ ଦାସୀକଷ୍ଟ ଦେଖୁ ନ ଥିଲ ନେତ୍ରର,
କେମନ୍ତେ ହେଲ ଦାରୁଣ ହାହା ନାଥ ମୋର ।"
ଏତେ କହି ଚନ୍ଦ୍ରାନନୀ ହେଲା ରୁଦ୍ଧସ୍ୱର,
ବାତାହତା ଲତା ପରି ପଡ଼ିଲା ମହୀର ।
ସଖୀଙ୍କ ଶୁଶ୍ରୂଷା ଲଭି ପୁଣି ଚେତି ବାଳା
ଦୂତମୁଖେ ଚାହିଁ କହେ ନୟନସଜଳା;—
"ଗଲି ରେ ବାରତାବହ, ଯହିଁ ପ୍ରଭୁ ମୋର
ବେଳୁବେଳ ବିକମ୍ପିତ ଦଗ୍ଧ କଳେବର ।"
ଉନ୍ମାଦିନୀ ସମ ବାମା ଉଠିଲା ଝଟତି,
କେଶ ବାସ ଅସମ୍ଭାଳ, କାରୁଣ୍ୟମୂରତି ।
ଯାଏ ପ୍ରାଣପତି ପଦଦରଶନ ପଥେ,
ଗଲେ ସଖୀଏ କୁମାର ଘେନିଣି ସଙ୍ଗତେ ।

ତଟିନୀତଟେ କାନନେ କେତେଷଣେ ସଖୀ
ଉତ୍ତରିଲ ଜୀବନ୍ତ କାରୁଣ୍ୟ ପ୍ରତିମୂର୍ତ୍ତି ।
ଜନକାଙ୍କ୍ଷୀ ନୟନେ ଦେଖି ସ୍ନେହାଦରେ
ପୋଷା ଜନ୍ତୁମାନେ ତାର ଧଇଁଲେ ପଛରେ ।
ତରୁ ଲତା ସ୍ୱାଗତ ସମ୍ଭାଷେ ପୁଷ୍ପରାଶି
ଫିଙ୍ଗିଲେ ଆନନ୍ଦେ ନେନେ ଦେଖିଣ ସୁକେଶୀ ।
ବନବିହଙ୍ଗୀ ହରଷେ କାକଳି ସୁତାନେ
ସମ୍ବର୍ଦ୍ଧନା କଲେ ବାଳା ଦେଖି ବହୁଦିନେ ।
ନ ଦେଖେ ନୟନେ ବାମା କାନନ ସୁନ୍ଦର,
ନ ଶୁଣେ ଶ୍ରବଣେ ବନଗୀତ ସୁମଧୁର ।
ଛିନ୍ନ ଲତାସମ ଅହା! ଖର ଶସ୍ତ୍ରାସ୍ତ୍ରାଘାତେ
ଯାଉଅଛୁ ଭୂଇଁ ଚଳିଛିନ କିବା ସତେ ।
ଅସ୍ଥିର ପଦବିକ୍ଷେପେ ସ୍ଖଳିତ ଚରଣ
ହୁଏ ପଦେ ପଦେ, ତେବେ ନାହିଁ ବାଳା ଜ୍ଞାନ ।
ଚକିତା କୁରଙ୍ଗୀ କିବା ଗୃହହିଁ ଉଦ୍‌ବେଗେ,
ଦେଖିଲ ପୁଷ୍ପିତା ମାଧବୀ ମଣ୍ଡପଲଗେ
ଅଧୋମୁଖେ ଭୂପତିତ ତା ଜୀବନେଶ୍ୱର,
ସାମାନ୍ୟ ଭୂଷଣେ ବିଭୂଷିତ କଳେବର ।
କାଞ୍ଚନଶୃଙ୍ଗ କି ଅବା ଭୂତଳେ ଲୁଣ୍ଠିତ,
ପ୍ରଭାକର କରେ କିବା ଧରା ଆଲୋକିତ ।
ଶ୍ଲଥ ଉଷ୍ଣୀଷ, କୁଞ୍ଚିତ ଗୁଚ୍ଛ ଶିରକେଶ
ଅସ୍ତବ୍ୟସ୍ତେ ନିପତିତ, ଗୃହିଁ ନାରାୟଣ
ପ୍ରାଣପ୍ରିୟତମ ମୃତ୍ୟୁଦୃଶ୍ୟ ଦେଖି ଆଗେ
"ଆହା ପ୍ରାଣେଶ୍ୱର" ବୋଲି ନଯବର ବେଗେ

ପତିପଦେ ସଶବ୍ଦେ ପଡ଼ିଲା ସୁକୁମାରୀ,
ସହକାର ସହ ଛିନ୍ନା ବ୍ରତତୀ ଯେସର ।
ଚକିତେ ଚମକି ବୀର ଉଠିଣ ବସିଲେ,
ମୂର୍ଚ୍ଛା ଅଭିନୟ ଯବନିକା ଉଠାଇଲେ ।
ତୋଳି ଧରି ବକ୍ଷେ ତନୁ ପ୍ରେମପ୍ରତିମାର
ଦେଖିଲେ ନିଷ୍ପ୍ରଭ ବିମ୍ବବଦନ ବାଳାର ।
ପତନ ସଙ୍ଗେ ବାଳାର କ୍ଷୀଣ ପ୍ରାଣବାୟୁ
ଶୋଭାସଦନ ତନୁରୁ ଗଲା ଗୃହୁଁ ଗୃହୁଁ ।
ନାସାରନ୍ଧ୍ରେ ଦେଲେ କର ନ ବହଇ ଶ୍ୱାସ,
ବକ୍ଷ ପରଶି ବୀରଙ୍କ ବୁଡ଼ିଲା ସାହସ ।
କରକୁ ଲାଗେ ଶୀତଳ ଶିଶିର ନିଶାନ୍ତେ
ଅନାବୃତ ସ୍ଥାନେ ହେମପ୍ରତିମା ଯେମନ୍ତେ ।
ଜାଣି ଜୀବନସଙ୍ଗିନୀ ସହସା ମରଣୀ
ହେଲା, ନିଜେ ହେଲେ ଅହା ତାହାର କାରଣୀ,
ଲଜ୍ଜା, ଅପମାନ, ଖେଦ ଶୋକ ସଙ୍ଗେ ମିଶି
ବୀର ଚେତନା-ଚନ୍ଦ୍ରକୁ ପକାଇଲା ଗ୍ରସି ।
"କି କଲି ଗୋ ପ୍ରିୟତମେ !" ବୋଲି ସେ ବିକଳେ
ପ୍ରେମଲତା ଧରି କୋଳେ ପଡ଼ିଲେ ଭୂତଳେ ।
ଇନ୍ଦୁମୁଖୀ ଇନ୍ଦୁମତୀ ଶବ ଧରି କୋଳେ
ପଡ଼ିଥିଲେ ଅଜ ରାଜ ଯଥା ଧରାତଳେ;
ଇନ୍ଦ୍ରଜିତ କରେ ଦେଖି ମାୟା ସୀତା ହତ
ହୋଇଥିଲେ ରାମଚନ୍ଦ୍ର ଯେସନ୍ତ ମୂର୍ଚ୍ଛିତ;
ତେମନ୍ତ ଧବାରେ ଧରାମଣ୍ଡନକୁ ଧରି
ଚେତା ହରାଇଣ ପଡ଼ିଗଲେ ଦଣ୍ଡଧାରୀ ।

ଅନୁସର ସଙ୍ଗିନୀଏ ଆସି ପ୍ରବେଶିଲେ,
ଅଦ୍ଭୁତ ଦୃଶ୍ୟ ଦେଖି ସ୍ତମ୍ଭିତ ହୋଇଲେ ।
ଦ୍ୟୁ ବସ୍ତ୍ର୍ୟୁ ସଖୀଏ କରନ୍ତେ ଶୁଶ୍ରୂଷା
ସଂଜ୍ଞା ଲଭି ବୀରମଣି ଉଠିଲେ ସହସା ।
ଅବଲାସମ ବିକଳେ କାନ୍ଦଣି କହନ୍ତି,
"ସୁଖନିଶି ଏବେ ମୋର ହୋଇଲା ଗୋ ପାହାନ୍ତି ।
ଅହା ରେ ନବ ନବୀନା କେଣେ ଛାଡ଼ିଗଲୁ,
ଅଭାଗୀର ଦଶା ଗୋ ଲେଉଟି ନ ଦେଖିଲୁ ।
ରହସ୍ୟ ବାକ୍ୟରେ ସିନା କହିଲି ସୁନ୍ଦରୀ,
ସେ ଛଳକୁ ଅଭିମାନ କରି ଗଲୁ ଗୋ'ସ୍ୱ ।
ସ୍ୱପନରେ ଦିନେ କରି ନ ଥିଲୁ ତୋ ମାନ,
ଆଜି କି ଦୋଷେ ପ୍ରେୟସି ହୋଇଲୁ ଗୋ ମଉନ ?
ତୋ ବିନା ବାନ୍ଧବୀ, ଦୃଶ୍ୟ ନୁହଇ ଅବନୀ,
ଘନ ଘନ ଛନ୍ନ ଦିନେ ତିମିର ରଜନୀ ।
ପଥିକର ଦଶା ବିଦ୍ୟୁତ ଆଲୋକ ବିନା
ଯେମନ୍ତ, ତେମନ୍ତ ଆଜି ମୋର ଦଶା ସିନା !
ନ ଦେଖି ଗୋ ସଖି ! ତୋର ଇନ୍ଦୁନିନ୍ଦିନନ
କେମନ୍ତେ ଧରିବି କହ ଏ ସନ୍ତପ୍ତ ପ୍ରାଣ ?
କରେ କର ଦେଇ ତୋର କାନନବିହାର,
ପ୍ରେମ ଉଚ୍ଛ୍ୱସିତ ମନେ ପଶା ଖେଳିବାର,
ମଧ୍ୟାହ୍ନେ ତୋ ସଙ୍ଗେ ଅହା ତରୁ ଛାୟାତଳେ
ପ୍ରେମାଳାପ କରି ସୁଖେ ଭ୍ରମନ୍ତୀର ବେଳେ
କୁରଙ୍ଗିନୀ କୁମରକୁ ତୋର ସ୍ନେହାଦର,
ଏହି କୁସୁମ ଉଦ୍ୟାନେ ଫୁଲ ତୋଳିବାର,

ଅଧରେ ତ ତୋଳେ କ୍ଷୀର ନାହିଁ ଗୋ ସୁନ୍ଦରୀ,
ଶୟନ କରିବା ଭାଗ୍ୟେ ନାହିଁ ପ୍ରାଣେଶ୍ୱରୀ !
ଯେବେ ତୋର ଲୀଳା ଖେଳା ଅରେ ଗୁଣବତୀ,
ମନେ ପଡ଼େ ଶତ, ହୁଏ ହୃଦୟ କମ୍ପିତ ।
ଶତ ଶତ ସ୍ମୃତି ତୋର ମୋର ଚଉପାଶେ
ଫଣୀସମ ଏଣୀଦୃଶା, ତୀବ୍ରତାପେ ଦଂଶେ !
କଳାକରକଳ ସମ କୁମର ତୋହର
ବିଚଳିତ ଦେଖି ଛଳେ ହୋଇଲେ ଅନ୍ତର ।
ଦଶ ମାସ ପାନ୍ତ ଶିଶୁ ରେ ହେମବରନା !
କେଉଁ ଦୋଷ ଦେଖି ତାହର ହେଲୁ ଗୋ ବିମନା ?
ଅଙ୍କସ୍ଥ ଉଠେ 'ମାଆ' ବୋଲି ଡାକିବ ସେ ଯେବେ,
କି ବୋଲି ଗୋ ଲବାଧରି ବୋଧିବ ମୁଁ ତେବେ ?
ହଂସୁଲି ତୂଳିକା କୁସୁମ ତଳପ ବିନା
ଏବାହୁ ଉପଧାନ ବିହୁନେ ସୁବଦନା,
ନ ଆସଇ ନିଦ୍ରା ପଦ୍ମ-ପଳାଶ-ଲୋଚନେ,
ଆଜି କେମନ୍ତେ ରେ ସଖି ! ଶୋଇବୁ ଶ୍ମଶାନେ ?
ଚିତାନଳ କ୍ଷଣେ ଜଳ ପୂର୍ଣ୍ଣ ନିଭିଯିବ,
ହୃଦ-ଚିତା ମୋର ଚିରଦିନ ଜଳୁଥିବ ।
ପ୍ରାଣରୁ ଅଧିକ କରି ପ୍ରାଣ ତୋ ହରିଲି,
ନାରୀହତ୍ୟା ପତ୍ନୀହତ୍ୟା ରୌରବେ ପଡ଼ିଲି ।
ଏ ଦୁଃଖୀ କାହିଁ ରଖିବ କହ ଚନ୍ଦ୍ରମୁଖୀ ?
ଏକା କରିଗଲୁ ମୋତେ କେଉଁଆଡ଼େ ସଖି !
କି ବୋଲି ଗୋ ପ୍ରବୋଧିବ ପିଅରେ ତୋହର ?
ତୋ ବିହୁନେ ନିଶ୍ଚେଁ ପ୍ରାଣ ଛାଡ଼ିବ ତାଙ୍କର ।

କି ବୁଦ୍ଧି କରିବି ଯେବେ ପୁଚ୍ଛିବେ ଜନନୀ,
କି ଉତ୍ତର ଦେବି, କହ ପୂର୍ଣ୍ଣେନ୍ଦୁବଦନୀ !
ତବ ବିନା ପ୍ରାଣେଶ୍ୱରି ! ଦାବାଗ୍ନି ସଦୃଶ
ଦହନ କରଇ ହୃଦ ଦୁର୍ବିଷହ କ୍ଳେଶ ।
ନିମେଷ ବିରହ ସଖୀ, କୋଟିଯୁଗ ମଣୁ,
ଆଜ ଫେରି ନ ଗୃହିଁଲୁ, ମୋ ଡାକ ନ ଶୁଣୁ ।
ମୁଁ ହୀନ ପାମର ମୋର ମୁଖ ନ ଗୃହିଁଲୁ,
ପ୍ରାଣପୁତ୍ତଳି ପୁତ୍ରକୁ ପରି କି କଲୁ ?
ଉଠ ରେ ଆନନ୍ଦମୟୀ ! ଗୃହଁ ତୋ କ୍ରମରେ
ମାତୃହୀନ କରି ଆହା ଦେଇଯାଅ କାରେ ?
ଉଠ ଚଳାଯାଙ୍ଗି ! ନେତ୍ର ଉନ୍ମୀଳନ କର,
ତୋ ସୁଧାସ୍ନିଗ୍ଧ ଦୃଷ୍ଟିରେ ମୋ ସନ୍ତାପ ହର ।
"ଉଠ ଶରୀନନ୍ଦ, ମୋର ଶୀତଳ ଶ୍ରବଣେ
ତୋ ସୁଧାମଧୁର ବାଣୀ ଡୃପିତ ପରାଣେ ।
ଉଠ ରେ ଅଭିମାନିନି ! ତେଜି ଅଭିନୟ,
ଏ ଦାରୁଣ ଦୁଃଖେ ଫାଟିଯାଏ ରେ ହୃଦୟ !"
ଗରୁ ଶୋକେ ଦୁଃଖୀ ଅହା ଧରି ବାଳାକର
ବୋଲନ୍ତି ଉନ୍ମାଦ ପ୍ରାୟ କହି ବାରବାର,
"ଅହା ରେ ରମଣୀମଣି ହତାଶିରୋମଣି"
କହୁଣି ପୁଣି ମୂର୍ଚ୍ଛିତେ ପଡ଼ିଲେ ଧରଣୀ ।
ପାରିଷଦ ଅମାତ୍ୟାଦି ଆସି ପ୍ରବେଶିଲେ,
ଚେଷ୍ଟା କରିଲେ ନାନାମତେ ପ୍ରବୋଧିଲେ ।
ଯେତେ ବୁଝାଇଲେ ସେତେ କାନ୍ଦନ୍ତି ଭୂପତି,
ଭୂତ ବିଷ୍ଟ ଜନ ପରି ଭୂମିରେ ଲୋଟନ୍ତି ।

ଶୋକେ ଜ୍ଞାନହତ ଭୃତ୍ୟ ସନ୍ତପ୍ତ ପରାଣ,
ଜାଣିଲେ ଗିରିନନ୍ଦିନୀ କୈଳାସଭୁବନ ।
ଶକ୍ତିଉପାସକ ପିତା ବୀରେନ୍ଦ୍ର କୁମାର,
ମହାକାଳୀ ରଙ୍ଗା ପାଦ ପୂଜେ ନିରନ୍ତର ।
ଦୟାମୟୀ ମହାମାୟୀ ଦୟା ବହି ଚିତ୍ତେ
ମୋହଗତି ନୃପେ ସ୍ୱପ୍ନେ କହିଲେ ଏମନ୍ତେ,
"ଉଠ ବତ୍ସ ଧୈର୍ଯ୍ୟ ଧର ଚିତ୍ତ ଶାନ୍ତ କର,
ଛିନ୍ନ ହୁବ ଲତା ହୃଦୟରୁ ପରିହର ।
ନାହିଁ ତବ ଦୋଷ, ତାର ପର୍ବାର୍ଜିତ କର୍ମ,
ନମିତ୍ତ ମାତର ପିତା ହେଲ ତବ କର୍ମ ।
ଶୁଣି ତେବେ,—ଦତ୍ତାତ୍ରେୟ ନାମେ ଋଷିବର
କରୁଥିଲେ ତପ ପୂର୍ବେ ସୁରଧୁନୀ ତୀର ।
ମନୋରମା ନାମେ ନାରୀ ଅପ୍ସରା ସମାନ
ଥିଲା ଅତି ସତୀ ପତିବ୍ରତା ଧର୍ମପ୍ରାଣ ।
ସୁରବାଳା ମେନକା ନାମରେ ଯେ ସୁନ୍ଦରୀ
ଧନେ ଗଙ୍ଗାତୀରେ ସଖୀ ସଙ୍ଗେ ସ୍ନାନ ସାରି
ତୀରେ ଦେଖେ କନ୍ଦର୍ପ ସମାନ ଯୁବା ଏକ
କରନ୍ତି ତପସ୍ୟା, ତେଜେ ହରାଇଲେ କି ଅର୍କ ?
ରୂପ ଗୁହିଁ ମୁଗ୍ଧ ହେଲ ସେ ସୁର ଅଙ୍ଗନା,
ତାଙ୍କ ଅଙ୍ଗସଙ୍ଗ ଲଭେ ହୋଇଲ ଛଳନା ।
ନିତି ଦିନ ଆସେ ପାଶେ ମୋହିନୀ ସୁବେଶେ,
ଭାବ ହାବ କଟାକ୍ଷେ ମନ ମୋହିବା ଆଶେ ।
ମାତ୍ର ସେ ଦ୍ୱିଜପୁଙ୍ଗବ ଥାନ୍ତି ପର୍ବତ
ଅଚଲ ଅଟଳ, ଧୈର୍ଯ୍ୟ ନ ହୋଇଲା ହତ ।

ଧନେ ଅଭିଳାଷ ବାଂକ୍ତି କରନ୍ତି ସୁନ୍ଦରୀ,
ଉତ୍ତରେ ବୋଇଲେ ଦତ୍ତାତ୍ରେୟ ତପସ୍ଵୀ;—
ମୋର ନାରୀ ସତୀଶ୍ରେଷ୍ଠା ମହାରୂପବତୀ,
ତା ବିନ ଗୋ ଅନ୍ୟଠାରେ ନ ବଳେ ମୋ ମତି ।
ତୋ ଆଶା ପୂରଣ ପାଇଁ ମୋର ଶକ୍ତି ନାହିଁ,
ଚଳ ଅନ୍ୟତ୍ର ଶରଦ ଶୁଭ୍ର ଚନ୍ଦ୍ରମୁହିଁ ।
ନିରାଶ ହୃଦୟେ ବାମା ଭାବେ ମନେ ମନେ;
କେମନ୍ତେ ଏହା ଯୁବତୀ ଦେଖିବ ନୟନେ ।
ଛଳେ କଉଶଳେ ତା ରେ କରିବ ବିରାଗ,
ତେବେ ମୋଠାରେ ଏ ନିଶ୍ଚେ ବଢ଼ିବ ସରାଗ ।
କୁଟିଳକେଶୀ ଏମନ୍ତେ ଅନ୍ତରେ ବିଚାରି
ଗଲା ଯହିଁ ଥିଲା ମନୋରମା ସୁକୁମାରୀ ।
ଦେଖିଲା, ସୁରଅବଳା କମ୍ପଳନୟନା,
ରୂପେ ରତି ଯିବ ହାରି, ସୁମନେ ସୁମନା ।
ସ୍ଵାମୀ ଅଗମନପଥ ଚାହିଁ ଶଶୀମୁଖୀ
ବସିଅଛି, ଅର୍ଘ୍ୟଥାଳୀ ସଯତନେ ରଖି ।
ରୂପ ଦେଖି ଈର୍ଷାଭରେ ମେନକା ସୁନ୍ଦରୀ
କପଟ ବଚନେ ବାମା ସମ୍ମୁଖେ-ଉଭାରି
ବିଶ୍ଵାସ ଜନ୍ମାଇ ପରିଚୟ ପଚାରିଲା,
ପତି ବିରହ-ବିଧୁରା ବିରାଗୀ ଜାଣିଲା ।
ବୋଇଲା ମେନକା, 'ଶୁଣ ପଙ୍କଜ ଲୋଚନେ,
ସ୍ନାନଅର୍ଥେ ଗଙ୍ଗାଘାଟରେ ଗଲି ସଖୀସନେ ।
ଦେଖିଲି ଗୋ, ପତି ତବ ବସିଥିଲେ ଧ୍ୟାନେ,
ଉରଗ ଦଂଶିଲା ଅସି ତାହାଙ୍କ ଚରଣେ ।

ଗତପ୍ରାଣ ହେଲେ, ଦେଖି ଅଚଳ ନୟନେ,
ଅନାଥା ହେଲ ଗୋ ଆହା ସୁଧାଂଶୁ ବଦନେ ।'
ଏହା ଶୁଣି ଋଷିନାରୀ ନିରାଶ ବିକଳେ
'ଆହା ନାଥ' ବୋଲି ଟଳି ପଡ଼ିଲା ଭୂତଳେ ।
ଶୁଣିଲେ ସୁଣବାସ୍ତୁ ଋଷି ମହାସତୀ,
ଦେଖିଲ ଅଦ୍ଭୁତ ଦୃଶ୍ୟ ନିଦିବ ଯୁବତୀ ।
ହେଲା ସ୍ତମ୍ଭୀଭୂତ କଥା ନ ଆସେ ତୁଣ୍ଡର,
ପ୍ରବେଶ ହେଲେ ଏକାଳେ ତହିଁ ବିପ୍ରବର ।
କାରଣ ଜାଣି କ୍ରୋଧରେ ଅଗ୍ନିମୂର୍ତ୍ତି ହେଲେ,
ବାଳାମୁଖ ଚାହିଁ ଦୁଃଖେ ଅଭିଶାପ ଦେଲେ;—
"ମିଥ୍ୟା ବଚନେ ନାଶିଲୁ ମୋର ପ୍ରିୟବତୀ,
ଦେବନାରୀ ହୋଇ କଲୁ ଏ ହୀନ ଅନୀତି !
ଏ ଦୋଷେ ମାନୁଷୀ ହୁଅ, ମିଥ୍ୟାବାଣୀ ଶୁଣି
ଅକାଳେ ସହସା ପ୍ରାଣ ତେଜିବୁ ତୁ ପୁଣି ।
ତୋ ମୃତ୍ୟୁ କାରଣ ହେଉ ତୋହର ନିଜ ପତି,
ଦେବତନୁ ତେଜି ଜନ୍ମ ହୁଅ ତୁ ଧରଣୀ ।
ଅଭିଶପ୍ତା ବାମା କାନ୍ଦି ପଡ଼ିଲା ଚରଣେ,
କହେ, 'ଅଜ୍ଞାନ ଦୋଷକୁ ଦଣ୍ଡ ଅକାରଣେ
ଦେଲ ଯେବେ ଘେନ ପ୍ରଭୁ ଅବଳା ମିନତି,
ତୁମ୍ଭେ ଜନ୍ମ ଲଭି ମୋର ହୁଅ ପ୍ରାଣପତି ।'
ବହୁତ ବିକଳେ କହି ଚରଣେ କାନ୍ଦିଲା,
'ତଥାସ୍ତୁ' ବୋଇଲେ ଋଷି, ଶାନ୍ତ ଦୟା ହେଲା ।
ସେହି ସେ ସୁରସୁନ୍ଦରୀ ବାଳିକା ରୂପସ,
ଯାହା ପାଇଁ ବତ୍ସ, ଶୋକ କରୁଅଛ ବସି ।

ଦେଜ୍ ନ ଯାଉନ୍ତୁ ସେ ତ ହେଲଣି ଅପ୍‌ସରୀ,
ବୃଥାରେ ଶୋକ କାପାଇଁ କର ଦଣ୍ଡଧାରୀ ?
ତୁମ୍ଭେ ସେହି ଦତ୍ତ୍ୟ ଦେବ ପୂତ୍ର ତରୁଣ ତାପସ,
ମୋହବଶେ ଭ୍ରାନ୍ତ କିପାଁ ହେଉଅଛ ବତ୍ସ ?
ଗଲଣି ଯେ ନ ଆସିବ ଆଉ ଏ ମରତେ,
ଅସାର ସଂସାର ସିନା ନ ଜାଣ କି ଏତେ ।
ବୃଥା ଭାବନା କି କେବେ ଦେଇ ପାରେ ଶାନ୍ତି,
ବରଂ ଦୁଃଖଗ୍ରନ୍ଥି ବଢ଼ାଇବ ସେ ଅଶାନ୍ତି ।"
ଏତେ କହି ଶୈଳସୁତା ହେଲେ ଅନ୍ତର୍ଦ୍ଧାନ,
ସଂଜ୍ଞା ଲଭି ଭୂତଳୁ ଉଠିଲେ ନୃପରାଣ ।
ସ୍ୱପନେ ଯେମନ୍ତ କହିଗଲେ ମହାମାୟୀ,
ସକଳେ ନ ପଡ଼ି ତାହା କହିଲେ ବୁଝାଇ ।
ଶ୍ରବଣେ ବିସ୍ମିତ ହେଲେ ସର୍ବ ପୁରଜନ,
ଶବସତ୍କାର ନିମନ୍ତେ କଲେ ଅୟୋଜନ ।
"ବଧୂ ହତ" ଏ ବାର୍ତ୍ତା ଶ୍ରବଣେ ରାଜମାତା
ଅସିଥିଲେ ଆହା ଯହିଁ ଶାୟିତା ଲଳିତା ।
ବୃଦ୍ଧାକେଳେ ଶୋଭେ ଉତ୍ପଲତା ସୁନ୍ଦରୀର,
ଜଣିଥିଲୀ କୋଳେ କିବା ଶୁଷ୍କ ପୁଷ୍ପହାର !
ଅଚ୍ଛିନ୍ନ କଣ୍ଠରୁ ଅଙ୍କ ଗ୍ରନ୍ଥ କେଶବଳୀ,
ବ୍ୟସ୍ତ ବସନ ଭୂଷଣ ନିପତିତା ବାଳୀ ।
ବିଶୁଷ୍କ ଅଧରୋଷ୍ଠରେ ନ ବହଇ ଶ୍ୱାସ,
ନିଦ୍ରିତା କି ଆହା ଛିନ୍ନବୀଣା ଶୋକୋଚ୍ଛ୍ୱାସ ।
କଲକଣ୍ଠୀକି କୋଳରେ ଧରଣ ଅକୁଳେ
କାନ୍ଦନ୍ତେ ପଡ଼ଇ ଅଶ୍ରୁ ତା ମୁଖ-କମଳେ ।

ଜୀର୍ଣ୍ଣ ଶରୀର ଅଶ୍ରୁ ଝରଇ କି ଝର,
ନଳିନୀ ଆନନେ ଯଥା ଝରେ ଅଶ୍ରୁଧାର ।
ବାଷ୍ପଦନ୍ତୁ ଯେତେ ଗୁଣ ଗଜଗମନାର
ସ୍ମରି କାନ୍ଦନ୍ତି ରାଣୀ ସକରୁଣ ସ୍ୱର ।
ବୃଦ୍ଧ ଅନ୍ଧ ପିତା ସୁତା ମୃତ୍ୟୁବାଣୀ ଶୁଣି
ଧରଣୀରେ ପଡ଼ି ମୋହଗତ ନୃପମଣି;
ବ୍ୟାଧ ଶରାଘାତେ କ୍ଷତ କୁରଙ୍ଗ ଯେସନ,
ବିଷମ ଶୋକବାଣେ ଆଘାତ ତେସନ ।
ସଙ୍ଗିନୀଏ ମୁଞ୍ଚି ଅଶ୍ରୁ ଅତି ହାହାକାରେ
କରନ୍ତି ବିଳାପ ଆହା ନରେଶ ଅନ୍ତରେ ।
ଚତୁରଙ୍ଗ ବୁଡ଼ିଗଲା ଶୋକସିନ୍ଧୁ ନୀରେ,
ପୁରଲୋକ ଜନ କରୁଣ ବିଳାପ ସ୍ୱରେ ।
ଆଣିଲେ ରତ୍ନ ଶିବିକା ହେମବିଭୂଷିତ,
କଲେ ସଯତନେ ନାନା କୁସୁମ ମଣ୍ଡିତ ।
ବାଜେ ମୃଦଙ୍ଗ, ମର୍ଦ୍ଦଳ ସକରୁଣ ସ୍ୱରେ,
ଗାଆନ୍ତି ଗାୟକ ନେତ୍ରୁ ଅଶ୍ରୁଜଳ ଝରେ ।
ବିଷାଦେ ପରିଚାରିକା ଚାମର ଢାଳନ୍ତି,
ନୟନନୀରେ ବିଧବା ଯୁବତୀଏ ତନ୍ତି
କରନ୍ତି ମଙ୍ଗଳଧ୍ୱନି ଅମଙ୍ଗଳ ଦିନେ,
ଆହା ରେ କରୁଣସ୍ୱର ଭାସିଯାଏ ବନେ !
ହେମ, କଉଡ଼ି ସହିତେ ଲିଆ, ପୁଷ୍ପରାଶି
ଅଗେ ଅଗେ ବିଞ୍ଚି ହୁଏ ଅଶ୍ରୁଜଳ ମିଶି ।
ବିଶଦ ବସନେ ନୃପ ବିଶଦ ଉତ୍ତରୀ,
ବିଷାଦମୁଖେ ଯାଆନ୍ତି, ନେତ୍ରୁ ନୀର ଝରି

ପଡ଼େ ବିଶାଳ ଉରସେ, ହୃଦୟ ବିଦରେ,
ବିଜୟ ପତାକା ଉଡ଼େ ବିଷାଦେ ଅମ୍ବରେ;
ବିଷାଦ ବଦନେ ସର୍ବେ ତଟିନୀର ତୀରେ
ଯଥା ଅନନ୍ତ, ବୁଡ଼ିଲା ବନ ବିଷାଦ ଅନ୍ଧାରେ ।
ଉତ୍ତରିଲେ ଜାହ୍ନବୀର ମଧୁମୟ ତୀରେ,
ବିଧିମତେ ଚିତା ଶଯ୍ୟା ରଚିଲେ ସତ୍ୱରେ ।
ସୁଗନ୍ଧ ଚନ୍ଦନକାଷ୍ଠ ଘୃତ ଭାର ଭାର
ଯଥା ବିଧାନେ ସକଳ ଦ୍ରବ୍ୟ ହେଲା ଠୁଳ ।
ପବିତ୍ର ସଲିଳେ ଶବ କରାଇଣ ସ୍ନାନ
ସୁପଟ୍ଟ ବସନ କରାଇଲେ ପରିଧାନ ।
ସିନ୍ଦୂର, ଗନ୍ଧ, ଚନ୍ଦନ, କଜ୍ଜଳ ରଞ୍ଜିଲେ,
ସୁଗନ୍ଧ କୁସୁମଦାମ ଆଭରଣ କଲେ ।
ଶରୀରୁ ସ୍ୱର୍ଣ୍ଣ ରତନ ଆଭରଣ
କାଢ଼ି ପରିଚାରୀଗଣେ କଲେ ବିତରଣ ।
ଲେପିଲେ କୁଙ୍କୁମ, ପଦେ ରଞ୍ଜିଲେ ଅଳତା,
କୁସୁମେ ଗୁନ୍ଥି କୁନ୍ତଳ କବରୀ ଶୋଭିତା ।
କୁସୁମ କଙ୍କଣ କରେ କୁସୁମ ବଳୟ,
କୁସୁମବାହୁଟି, ଗଳେ ପୁଷ୍ପହାରଚୟ ।
କୁସୁମ କୁଣ୍ଡଳ କର୍ଣ୍ଣେ, ପୁଷ୍ପ ନାସାମଣି,
ଗୋଟି ଗୋଟି କୁସୁମେ ରଞ୍ଜିଲେ ଗୁନ୍ଥି ବେଣୀ ।
କୁସୁମଭୂଷଣା କିବା ଶାରଦୀୟା ଉଷା,
ଭୂତଳେ କି ମୂର୍ତ୍ତିମତୀ ଶୋଭେ ତଥା ଯୋଷା ।
ବିଷାଦଘନେ ଆଚ୍ଛନ୍ନ ସେ ବିଧୁବଦନ,
ନିମୀଳିତ ଖଞ୍ଜନଗଞ୍ଜିତ ଯୁଗ୍ମ ନୟନ ।

ନାହିଁ ହସର ଶୁଭ୍ରଦଣ୍ଡୀ ବନ୍ଧୁଲି ଅଧରେ,
ମିଶିଛି ହାସଲହରୀ ଶୋକପାରାବାରେ ।
ଅହା, ସୁନ୍ଦରୀଙ୍କୁ ଶୁଆଇଲେ ଚିତାକୋଳେ,
ଗୁହାଁ ନୃପନେନ୍ଦ୍ର ନୀର ବହେ ଅସମ୍ଭାଳେ ।
ଚିତା ଅଗ୍ରେ ଅଗ୍ରସର କାତର ବଚନେ
ବୋଇଲେ, "ଅହା ରେ ପୂର୍ଣ୍ଣସୁଧାଂଶୁ ବଦନେ !
ଅକାଳେ କାଳମୁଖରେ ଦେଲି ତୋତେ ବଳି,
ନୃଶଂସକୁ ତେଜ ପ୍ରିୟସଖି ଗଲୁ ଚଳି ।"
ଏତେ କହି ବରଷନ୍ତି ନୟନ-ଆସାର,
ଶୋକବେଗେ ଲୋଟିଗଲେ ସେ ଚିତିନୀତୀର ।
ବେଦଜ୍ଞ ବ୍ରାହ୍ମଣେ ବେଦମନ୍ତ୍ର ଉଚ୍ଚାରିଲେ,
ସାଶ୍ରୁନେତ୍ରେ ସଧବାଏ ହୁଳହୁଳି ଦେଲେ ।
ଶଙ୍ଖ, ଘଣ୍ଟା ବାଜେ, ବାଜେ ମୁରଜ, ମନ୍ଦିରା,
ଅକୁଳେ କାନ୍ଦିଲେ ସର୍ବେ, ବହେ ଅଶ୍ରୁଧାରା ।
ପୁଷ୍ପ ସହ ଲଜାବୃଷ୍ଟି କରନ୍ତି ଅବଳା,
ଶେଷ ବିଦାୟ ଘେନିଲେ ମରତୁଁ ବିଜଳା ।
ଉଠିଲା ଗଗନେ ଅହା ଭୀମ ଚିତାନଳ,
ନିମେଷେ ହୋଇଲା ଭସ୍ମ ସେ ରୂପ ଅତୁଳ ।
ସେ ଦୃଶ୍ୟରୁ ନେତ୍ର କ୍ରମେ ହେଲା ଆକର୍ଷିତ
ଅନମ୍ବରପଥେ, ସର୍ବେ ହୋଇଲେ ଚକିତ ।
ଜ୍ୟୋତି ବିଭୂଷିତ ମଣିମଣ୍ଡିତ ବିମାନେ
ବସିଛି ବିଜଳା ତହିଁ ସହାସ-ବଦନେ ।
ଅନନ୍ତ ମଧୁରହାସ ମଧୁର ଅଧରେ,
ଅନନ୍ତ ଯୌବନଜ୍ୟୋତି ତନୁରେ ପ୍ରସରେ ।

ବେଷ୍ଟି ସୁରବାଳା ଧରିଛନ୍ତି ବାଳାକର,
ଅଦୃଶ୍ୟ ହେଲା ବିମାନ ଗଗନ ଭିତର ।
ବିସ୍ମିତ ହେଲେ ଦର୍ଶକେ, ତେଜି ଦୀର୍ଘଶ୍ୱାସ
ମୁଞ୍ଚି ଅଶ୍ରୁ ଦୁଗ୍ଧାରେ ବିଷାଦେ ନରେଶ
ଚିତାନଳ ନିଭାଇଣ ଘେନି ନିଜ ଗଣ,
ଫେରିଲେ ନଗରେ ଶୋକସନ୍ତପ୍ତ ପରାଣ;
ଦେବୀପ୍ରତିମା ବିସର୍ଜି ବିଜୟା ପ୍ରଦୋଷେ
ଲେଉଟନ୍ତି ଜନେ ଯଥା, ଫେରିଲେ ଆବାସେ ।
ଝୁରି ଝୁରି ତନୟାରେ ବୃଦ୍ଧ ପୁରଞ୍ଜୟ
ଅଳ୍ପଦିନେ ଜୀବନ ଛାଡ଼ିଲେ ନରରାୟ ।
ନିତି ନିଜ ପ୍ରଣୟପଦ୍ମିନୀ ଭଜି ମନେ,
ବୀରେନ୍ଦ୍ରକୁମାର ନୃପ ବିଷଣ୍ଣ ପରାଣେ
ବୁଝୁଥାନ୍ତି ରାଜକାର୍ଯ୍ୟ ବାହ୍ୟେ ରାଜାପ୍ରାୟେ,
ଅନ୍ତରେ ମାତ୍ର ଥାଅନ୍ତି ଯୋଗୀଙ୍କ ପରାୟେ ।
କୁମାରେ ପାଳିଲେ ଯତ୍ନେ ବୃଦ୍ଧା ପିତାମହୀ,
ମୃତ ମହିଷୀର ପ୍ରୀତ କ୍ଷୀଣ ସ୍ମୃତି ସେହି ।
ରହି ନରପତି ଅଦ୍ଧା ତା ଗୃହୁ ଅନନ,
ପୁତ୍ରପ୍ରାୟେ ଯତନେ ପାଳନ୍ତି ପ୍ରଜାଗଣ ।
କାଳକ୍ରମେ ଉପଯୁକ୍ତ କୁମାରଙ୍କ କରେ
ଦେଇ ରାଜ୍ୟଭାର ଭୂପ ଗଲେ ବନଘୋରେ ।
ବାନପ୍ରସ୍ଥାଶ୍ରମେ କାଟି ଅନ୍ତିମ ଜୀବନ,
ହୃଦୟେ ଭଜି ହୃଦୟହାରିଣୀ ବଦନ,
ଗଲେ ଚଳି କାଳବଳେ ଅମରଭବନେ
ନାମ ମାତ୍ର ରହି ସିନା ଏହି ମର୍ତ୍ତ୍ୟଧାମେ ।

ଯାଉଛି ବଉଳା ଆହା, ମରତ ବଉଳି ।
ଧରଣୀ-ମାନସସର-ହେମ-ପଦ୍ମ କଳି ।
ବଉଳା-ସତୀତ୍ୱପ୍ରଭା ବଉଳି ବରଣେ,
ବଉଳାର ପାତିବ୍ରତ୍ୟ ଏହି ମରଧାମେ,
ରହିଲା କାଳବକ୍ଷରେ ଅମର ଅକ୍ଷରେ,
ଉଜ୍ଜ୍ୱଳେ ଝଲସେ ଉରୋଭୂଷଣ ରୂପରେ ।





Printed by P. Kar, U. S. Press, Cuttack—13-11-40—1050